# ପୁରାପୁରି ପାରିବାରିକ

( ପ୍ରଥମ ଭାଗ )

## ଗୋବର୍ଦ୍ଧନ ବାବୁଙ୍କ ପରିବାର

ଗୋପାଳ ଛୋଟରାୟ

ପ୍ରକାଶକ
**କଟକ ଟ୍ରେଡିଂ କମ୍ପାନୀ**
ବାଲୁବଜାର, କଟକ-୨

ପ୍ରଥମ ପ୍ରକାଶ
**ଅଗଷ୍ଟ ୧୯୭୩**
ଏକହଜାର ଏକଶହ

ପ୍ରଚ୍ଛଦପଟ୍ଟ
**ଅସିତ୍ ମୁଖାର୍ଜି**

ମୁଦ୍ରଣ
**ଗୋସ୍ୱାମୀ ପ୍ରେସ୍**
କଟକ-୨

ଉତ୍ସର୍ଗ

ବନ୍ଧୁବର ଶ୍ରୀ ରାମକୃଷ୍ଣ ଦାସ
ପ୍ରୀତହସ୍ତକମଳେଷୁ

# କୃତଜ୍ଞତା ଜ୍ଞାପନ

ଆକାଶବାଣୀ କଟକ କେନ୍ଦ୍ରର ପୂର୍ବତନ କର୍ମକର୍ତ୍ତା ଶ୍ରୀ ପି. ଭି. କୃଷ୍ଣମୂର୍ତ୍ତି ଓ ତତ୍କାଳୀନ ନାଟକ ପ୍ରଡ୍ୟୁସର ଶ୍ରୀ ସୁରେନ୍ ମହାନ୍ତି ଧୂପଧୂଣ ପାରିବାରିକ ରଚନା କାଳରେ ମତେ କ୍ରମାଗତ ଉତ୍ସାହ ପ୍ରଦାନ କରିଛନ୍ତି । ମୋର ବନ୍ଧୁ ଓ ସହକର୍ମୀ ଶ୍ରୀ ସାମୁଏଲ୍ ନାୟକ କରିଛନ୍ତି ଏହାର ନାମକରଣ । ଏଥିପାଇଁ ଏମାନଙ୍କ ନିକଟରେ ମୁଁ ଋଣୀ ।

ଧୂପଧୂଣ ପାରିବାରିକକୁ ପୁସ୍ତକାକାରରେ ପ୍ରକାଶ କରିବା ପାଇଁ ସଦୟ ଅନୁମତି ଦେଇଥିବାରୁ ଆକାଶବାଣୀର କର୍ତ୍ତୃପକ୍ଷଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଛି ।

**ଗୋପାଳ ଛୋଟରାୟ**

# ଗ୍ରନ୍ଥ ପ୍ରବେଶ

ପୂର୍ବପୁର ପାରିବାରିକର ଜନ୍ମସ୍ଥାନ ହେଉଛି କଟକ ବେତାର କେନ୍ଦ୍ର । ··· ଗୋଟିଏ ସାଧାରଣ ମଧ୍ୟବିତ୍ତ ପରିବାରର ପୃଷ୍ଠଭୂମି ଉପରେ ରଚିତ, ମାସକୁ ଗୋଟିଏ ଲେଖାଁ କୌତୁକ ଚିତ୍ର ବା ନାଟିକା ବେତାରରେ ପ୍ରସାରିତ ହେବ—କର୍ତ୍ତୃପକ୍ଷଙ୍କ ଠାରୁ ଏଇ ନିର୍ଦ୍ଦେଶ ପାଇଲି । ପରିବାର ନିର୍ବାଚନ ହୋଇଗଲା--"ଗୋବର୍ଦ୍ଧନ ବାବୁଙ୍କ ପରିବାର ।" ଆରମ୍ଭରୁହିଁ ମୋର ମନେ ହେଲା-- ଏ କାର୍ଯ୍ୟକ୍ରମ ଲୋକପ୍ରିୟ ହୋଇପାରିବ । ୧୯୫୭ ମସିହା ଜୁଲାଇ ମାସରେ ଗୋବର୍ଦ୍ଧନ ବାବୁଙ୍କ ପରିବାରର ପ୍ରଥମ ଚିତ୍ର ପ୍ରସାରିତ ହେଲା । ଗୋଟିଏ ଦୁଇଟି ଚିତ୍ର ପ୍ରଚାରିତ ହେବାପରେ ଦେଖାଗଲା, ଆମେ ଯାହା ଆଶା କରିଥିଲୁ, ପାରିବାରିକ ତାଠୁଁ ବହୁ ଅଧିକ ଗୁଣରେ ଲୋକପ୍ରିୟ ହୋଇଯାଇଛି । ଆରମ୍ଭରୁ ଏହା ଥିଲା ଏକ ତ୍ରୈମାସିକ କାର୍ଯ୍ୟକ୍ରମ । କିନ୍ତୁ ଲୋକପ୍ରିୟତା ଯୋଗୁଁ ଅନିର୍ଦ୍ଦିଷ୍ଟ କାଳ ପାଇଁ ଏହାର ପ୍ରଚାର ବଢ଼ାଇ ଦିଆଗଲା । ପ୍ରାୟ ଦଶଟଗୋଟି ଚିତ୍ର ପ୍ରଚାରିତ ହେବାପରେ ଦେଖାଗଲା, କେତେକ କାରଣରୁ ଗୋବର୍ଦ୍ଧନ ବାବୁଙ୍କ ପରିବାର ସହିତ ଆଉ ସମ୍ପର୍କ ରକ୍ଷା କରିବା ସମ୍ଭବ ହୋଇ ପାରୁନି । କିନ୍ତୁ ପୂର୍ବପୁର ପାରିବାରିକ କାର୍ଯ୍ୟକ୍ରମକୁ ଅବ୍ୟାହତ ରଖିବାକୁ ହବ । ଫଳରେ ଗୋବର୍ଦ୍ଧନ ବାବୁଙ୍କ ପରିବାର ବାଦ୍ ପଡ଼ିଲେ ଓ ପାରିବାରିକର କ୍ଷେତ୍ରକୁ ଆସିଲେ ଓକିଲବାବୁ, ଡାକ୍ତରବାବୁ ଓ ମାଷ୍ଟର ବାବୁ ପ୍ରଭୃତି ବହୁ ବିଭିନ୍ନ ପରିବାର । ଦୁଇବର୍ଷ ପରେ ପାରିବାରିକର ଧାରା ପୁଣି ବଦଳିଲା । ପୃଷ୍ଠଭୂମିକୁ ଆସିଲେ ମୁରାରି ବାବୁଙ୍କ ପରିବାର । ···

ପରି ଶେଷରେ, ସର୍ବମୋଟ ତେଳିଶ ଗୋଟି ଚିତ୍ର ଧାରାବାହିକ ଭାବରେ ପ୍ରକାଶିତ ହେବାପରେ, ୧୯୬୦ ମସିହା ମାର୍ଚ୍ଚ ମାସରେ ପୂରାପୂରି ପାରିବାରିକର ଉଦ୍‌ଯାପନ ଘଟିଲା ।

ପୂରାପୂରି ପାରିବାରିକ ଏକ chain play ବା ଧାରା-ବାହିକ ନାଟକ । ଓଡ଼ିଆରେ ଏ ପ୍ରଚେଷ୍ଟା ବୋଧହୁଏ ଏହା ପୂର୍ବରୁ କରା ଯାଇନି, ନାଟକର ସମସ୍ତ ଧର୍ମରକ୍ଷା କରିବା ସଙ୍ଗେ ସଙ୍ଗେ ଏହାର ରଚନା କାଳ ମଧ୍ୟରେ କଟକ ସହର ତଥା ଓଡ଼ିଶାର ବିଭିନ୍ନ ସ୍ଥାନରେ ଘଟିଥିବା ବହୁ ସମସାମୟିକ ଘଟଣାର ବାସ୍ତବ ଚିତ୍ର ଏଥିରେ ସ୍ଥାନ ପାଇଛି ।

ବର୍ତ୍ତମାନ ତିନିଗୋଟି ଭାଗରେ ପୂରାପୂରି ପାରିବାରିକ ପ୍ରକାଶିତ ହେଉଛି । ପ୍ରଥମ ଭାଗରେ ଗୋବର୍ଦ୍ଧନ ବାବୁଙ୍କ ପରିବାର, ଦ୍ୱିତୀୟ ଭାଗରେ ଓକିଲ ବାବୁ ପ୍ରଭୃତି ବହୁ ବିଭିନ୍ନ ପରିବାର ଓ ତୃତୀୟ ଭାଗରେ ମୁରଲୀ ବାବୁଙ୍କ ପରିବାର । ଏହାର ପ୍ରତ୍ୟେକଟି ଚିତ୍ର ଯେପରି ମଞ୍ଚରେ ଅଭିନୀତ ହୋଇ ପାରିବ, ସେଇ ଦୃଷ୍ଟିରୁ ଦୃଶ୍ୟସଜ୍ଜା ପ୍ରତି ବିଶେଷ ଦୃଷ୍ଟି ଦିଆ ହୋଇଛି ।

ପ୍ରିୟବାବୁ ଲେନ
ଆଲମ୍‌ଚାନ୍ଦ ବଜାର
କଟକ—୨
ଅଗଷ୍ଟ ୧୯, ୧୯୬୩

**ଗୋପାଳ ଛୋଟରାୟ**

[ଗୋବର୍ଦ୍ଧନ ବାବୁଙ୍କ ପରିବାରର ଚିତ୍ର ଗୁଡ଼ିକର ରଚନା କାଳ ହେଉଛି ୧୯୫୭ ଜୁଲାଇରୁ ୧୯୫୮ ଜୁନ୍ ]

# ଗୋପାଳ ଛୋଟରାୟଙ୍କର କେତେକ ନାଟକ

ଫେଶଆ

ଘଟକ

ପ୍ରତିଭା

ଭରସା

ଈଁନ୍‌ଜା

ଅର୍ଦ୍ଧାଙ୍ଗିନୀ

ମଲାଜହ୍ନ

ନୂଆବୋଉ

ପଦ୍ମାଳୟା

ବୋଲେହୁଁଟି

ଜନଶତ୍ରୁ

ପର କଲମ

ନଷ୍ଟ ଉର୍ବଶୀ

ଶଙ୍ଖ ସିନ୍ଦୂର

ପଥିକ ବନ୍ଧୁ

ଅମଡ଼ା ବାଟ

ଅଭାଗିନୀର ସ୍ୱର୍ଗ

ଓ

ପୁରାପୂର ପାରିବାରିକ

## ଏ ଚକ୍ରରେ ଅଛନ୍ତି—

| | | | | | | |
|---|---|---|---|---|---|---|
| ଗୋବର୍ଦ୍ଧନ ବାବୁ | ... | ଗୃହସ୍ୱାମୀ | ... | ବୟସ | ୩୭ |
| କୁନ୍ତଳା | ... | ତାଙ୍କ ସ୍ତ୍ରୀ | ... | ବୟସ | ୩୦ |
| ଇତି | ... | ତାଙ୍କ ଝିଅ | | ବୟସ | ୧୦ |
| ବିଜୁ | | ତାଙ୍କ ପୁଅ | | ବୟସ | ୮ |
| ସାଧୁ | | ତାଙ୍କ ପାଚକ | ... | ବୟସ | ୪୫ |
| ରଘୁ | | ତାଙ୍କ ଭୃତ୍ୟ | ... | ବୟସ | ୩୦ |

## ଭୂମିକା

| | | |
|---|---|---|
| ଗୋବର୍ଦ୍ଧନ ବାବୁ | ... | ସୁରେନ୍ ମହାନ୍ତି |
| କୁନ୍ତଳା | | ସ୍ନେହ ଜେମା |
| ଇତି | ... | ଜୟନ୍ତୀ ପ୍ରଧାନ |
| ବିଜୁ | | ବିଜୟ କୁମାର ମହାନ୍ତି |
| ସାଧୁ | ... | କୃଷ୍ଣଚନ୍ଦ୍ର ପାଣ୍ଡେ |
| ରଘୁ | ... | ଦୀନବନ୍ଧୁ ଦାସ (ଟିମା) |

[ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଏହିମାନେହିଁ ଗୋବର୍ଦ୍ଧନ ବାବୁଙ୍କ ପରିବାରର ପ୍ରତ୍ୟେକ ଚକ୍ରରେ ନିଜ ନିଜ ଭୂମିକାରେ ଅଂଶ ଗ୍ରହଣ କରିଥିଲେ]

# ପ୍ରଥମ ଚିତ୍ର

## ପ୍ରଥମ ଦୃଶ୍ୟ

[ ସ୍ଥାନ—କଟକ ସହର । ଗୋବର୍ଦ୍ଧନ ବାବୁଙ୍କ
ବାସଭବନର ଏକ ପ୍ରକୋଷ୍ଠ । ସମୟ—ପୂର୍ବାହ୍ଣ ।
ଅସ୍ତବ୍ୟସ୍ତ ହୋଇ କୁନ୍ତଳା ଆସିଲେ ]

କୁନ୍ତଳା—(ମନକୁ ମନ)—ମୁଁ ଆଉ ପାରିବି ନାହିଁ ଲୋ ମା ! ଛୁଆ ବୋଲି ଦିଖଣ୍ଡ—ଦିନସାରା ତାଙ୍କର ନାଠ ଲାଗିଛି । ଘଡ଼ିକେ "ଅପାଲେ" "ଭଜୁଲେ" ବୋଲି ପାଣି ଗଳିବା ନାହିଁ । ତା' ଆର ଘଡ଼ିକ ଦେଖିଲି ବେଳକୁ ଯା' ମୁହଁ ଏଣିକି ତା' ମୁହଁ ସେଣିକି । କିଏ ଏଣିକି ତାଙ୍କୁ ସମ୍ଭାଳୁଛି ସମ୍ଭାଳୁ । ମୁଁ ଆଉ ପାରିବି ନାହିଁ ।

(ପ୍ରସଙ୍ଗ ବଦଳାଇ) ଆ ହା ହା—ବୁଢ଼ୀଟା ସାଙ୍ଗରେ କାଲି ଅଧଘଣ୍ଟାଏ ଧକରଚକର ହୋଇ ବାରଣାରୁ ଛ'ଅଣାକୁ ଖସି, ଏତେ ସୁନ୍ଦର କଲାମର୍ମର୍ କଣ୍ଠାଟା କିଣିଥିଲି—ଏ ନିଆଁଲଗା ମୂଷା ସେଥିରୁ ଫାଳେ ଖାଇ ଦେଲାଣି । ସେଇ ମୂଷା ଡରରେ ସେ ଘରୁ ଆଣି ଏ ଘରେ ରଖିଲି—ତେବେ ବି କ'ଣ ରହିଲା ? ଶୁକ୍ରବାର ଦିନ ନନ୍ଦ ଚୁଙ୍ଗୁଡ଼ି ଆଣିଦେବ ବୋଲି ନୃସିଂହ ପଣ୍ଡା କହିଯାଇଥିଲା ।

ମନ କରିଥିଲି କଖାରୁ ବୁଟ୍ଟୁଡ଼ିମାଛ ରାନ୍ଧିବି । ଆଉ କ'ଣ ଶୁକ୍ରବାର ଯାଏ ରହିବ ? ସଢ଼ି ପାଣି ହୋଇଯିବ । ଏ ବେଳା କଥା ତ ନୁହେଁ । ଇଏତ ଅଫିସ ଯିବେ ବୋଲି ଘୋଡ଼ାରେ ଲଗାମ୍ ଦେଇ ବସିଥିବେ । ଅରବେଳାକୁ ବଜାରରୁ ଦି'ଟା ଚୁଙ୍ଗୁଡ଼ି ଆଣି ରାନ୍ଧି ଦଉ । (ବଡ଼ପାଟିରେ) ପୁଷ୍ପା, ସାଧୁ, ସାଧୁ (ସ୍ୱର କମାଇ) ଧାନ ହାଣ୍ଡିରୁ ପେଜ ଗାଳି ବସିଥିଲେ ଫାଟିଫୁଟି ଗଲେ ବି ଶୁଣିବ ନାହିଁ । (ପୁଣି ବଡ଼ ପାଟିରେ) ସାଧୁ, ସାଧୁ । (ମୁଁକର ସାଧୁ ଆସିଲ)

ସାଧୁ—କ'ଣ କହୁଚ ମା ?

କୁନ୍ତ—କାଲି ଯେଉଁ କଖାରୁ କଣା ହୋଇ ନ ଥିଲା—

ସାଧୁ—ହଁ...ହଁ...

କୁନ୍ତ—ସେଥିରୁ ଫାଲେ ମୂଷା ଖାଇ ଦେଲଣି ।

ସାଧୁ—ଏଁ !! ଫାଲେ ଖାଇଦେଲା ! ମୂଷା ପର ଜୀବ—କେତେ ପାରନ୍ତା ହୋଇଚ !

କୁନ୍ତ—ତୁ ସାଧୁକୁ କହି ଦେ'କ...

ସାଧୁ—ମୁଁ କହିଚି ମା—ଘଇନାକୁ, ଆଠଦିନ ହେଲା କହି ଦେଇଚି । ତାଙ୍କ ଦି'ସା ଆସିଥିଲେ । ଘଇନା ତାଙ୍କୁ କେତେ କରି କହିଛନ୍ତି । ତାଙ୍କ ମାମୁଁଘର ଗାଁରେ କୁଆଡ଼େ ଅସଲି ମୂଷା ଯନ୍ତା ତିଆରି ହୁଏ । ଏଠିକା ଯନ୍ତା ଗୁଡ଼ିକ ଠକାମି ବୋଲି, ତାଙ୍କ ଦି'ସା କହିଯାଇଛନ୍ତି—ସେ ଏସନ ମକର ଯାତ୍ରାକୁ ତାଙ୍କ ମାମୁଁ ଘରକୁ ଗଲେ ଗୋଟାଏ ବଢ଼ିଆ ଯନ୍ତା ଯତେଇ ଦେବେ ।

କୁନ୍ତ—ଶୁଣୁଚ ତା' ଅକଲ । ମୁଁ କହୁଚ କ'ଣ ସେ ବୁଝିଲ କ'ଣ !! ଆରେ ନାଇଁ ମୁଁ ଟଙ୍କା କଥା କହୁନ । ସାଟୁକୁ କହ, ଆରବେଲାକୁ ମନେକର କଖାରୁଟା ନେଇ ରାନ୍ଧିବ । ଆଉ ତୁ ବଜାରରୁ ଚୁଙ୍ଗୁଡ଼ି ମାଛ ଆଣିବୁ·· ବୁଝିଲୁ । ଯା ··· (ସାଧୁ ଚାଲିଗଲ ) ବଡ଼ ଗୃମଚଟା କୁଆଡ଼େ ଗଲା— ଖୋଜି ଖୋଜି ଥକିଲଣି । ହେଇଛି··· ଏ ଟ୍ରଙ୍କ ସନ୍ଧରେ କିଏ ପୂରେଇଚ । ହେଇ ଦେଲ ମା—ବେଣ୍ଟଟା ମୂଳରୁ ଦ'ଖଣ୍ଡ ହୋଇ ଟୁଆ ହେଇଚ । ଇଏ ସେଇ ବଜୁର କାମ । ହେ ଭଗବାନ— ଯାହାଙ୍କର ପାଞ୍ଚଟା—ସାତଟା—ଦଶଟା— ସେମାନେ କେମିତି କେଉଁଠୁ କେଜାଣି ! ମୁଁ ତ ଏ ଦ'ଟାକୁ ନେଇ ଅସି ଅଧା ପ୍ରାଣ ହେଲଣି । ନା··· ମୁଁ ଆଉ ପାରିବ ନାହିଁ । ଯାହା ହୁଅ···ସିଏ ସମାଜ—ମୁଁ ଅଉ ପାରିବ ନାହିଁ । (ହାତରେ ଖବରକାଗଜ ଧରି ଗୋବର୍ଦ୍ଧନ ବାବୁ ଆସିଲେ । )

ଗୋବ—ହୁଁ !! ସେ "ପାରିବ ନାହିଁ" ମୁଁ ଏ "ପାରିବ ନାହିଁ" ଯାଏ ଯେତେ ଉମର ନ ପାରିବାର ଦୁଃଖ, ସବୁ ତା ହେଲେ ମୋର ଉଦ୍ଦେଶ୍ୟରେ ଏଠି ଉଖାଣୁଚ ?

କୁନ୍ତ—ନାଇଁ, ମୋର ଆଉ କିଏ ଏଠି ଅଛି—ମୁଁ ତା'ର ଆଗରେ ଗୁହାରି କରୁଥିଲ !!···କ'ଣ ଆଉ କହନ୍ତି ?

ଗୋବ—ତା ହେଲେ କୁନ୍ତଳା ସବୁ ବ୍ୟର୍ଥ ହୋଇଚ । ଆରମ୍ଭଟା ମୋ କାନରେ ଏ···ମି···ତି ଅସି ବାଜି ଯାଇଥିଲ । ଶେଷଟା ଅବଶ୍ୟ ମୁଁ ବାଧ୍ୟ ହୋଇ ଶୁଣିଚ । ବାକୀଟା ତମେ କ'ଣ କହୁଚ, ତମେ ଜାଣ । ମୁଁ ଜାଣିଶୁଣି ତାକୁ ଏ କାନରେ ପୂରେଇ ସେ କାନରେ ବାହାର କରି ଦେଇଚ ।

**କୁନ୍ତ**—ତା' ହେଲେ ଏଇ ଲୀଳା ଏଠି ଲାଗି ଥିବ ? ମୂଷା କଖାରୁ ଖାଇବ—ଗୃହର ଭଙ୍ଗା ହବ—ଆଉ ସେ ଧା'ଡ଼ା ଡେଙ୍ଗଣେ ବାଡ଼ଅ ପେଡ଼ା ଲଗିଥିବେ—

**ଗୋବ**—କେତେ ଥର ମୁଁ ତମକୁ କହୁଛି—ମୁଁ ବହି କାଗଜ ପଢ଼ୁଥିଲା ବେଳେ ମୋ କାନ ପାଖରେ ଏ ଅଭିନୟ ଆରମ୍ଭ କରିବ ନାହିଁ । ଅଚ୍ଛା, ମତେ ଟିକିଏ ଖୋଲି କରି କୁହତ— ମୋ ପଢ଼ା ଦେଖିଲେ କ'ଣ ତମ ଦେହ ସହେ ନାହିଁ ? ତମେ ତମ କାମରେ ଲଗିଥିବ—ଯେମିତି ମୁଁ ବହି ଖଣ୍ଡେ କି କାଗଜ ଖଣ୍ଡେ ଧରିବି—ସଙ୍ଗେ ସଙ୍ଗେ ତମର ଆରମ୍ଭ ହେଇ ଯିବ ! କ'ଣ ? ମୋ କାଗଜ ପଢ଼ା ସଙ୍ଗରେ ତମ ବାକ୍ ଶକ୍ତିର କିଛି ମାଗ୍‌ନେଟିକ୍ (Magnetic) ସମ୍ପର୍କ ରହିଛି ?

**କୁନ୍ତ**—ଏକା ତମେ ଏ କଥା କହୁଚ—ମୁଁ ଆଉ ତମକୁ କହୁ ନାଇଁ ନା ? ଥରେ ନୁହେଁ, ପାଞ୍ଚଥର କହୁଥିବି···ତମ କାଗଜ ପଢ଼ାର ଗୋଟାଏ ବେଳ ଠିକଣା କର । ଯେତେବେଳେ ପାରୁ ସେତେବେଳେ ବହି କାଗଜ ମେଲେଇ ବସିଲେ— ଏଣେ ଘର ଚଳେନା ।

**ଗୋବ**—ହେଇତ, କୁନ୍ତ ! ଧର୍ମକୁ ଆଖି ମିଟିକା ମାରି କଥା କୁହନା । ମୁଁ ସକାଳେ, ସଂଧ୍ୟାରେ, ଖାଇ ବସିବା ବେଳେ ଏମିତିକି ରାତି ଅଧରେ ନିଦରୁ ଉଠି ଚେଷ୍ଟା କରି ଦେଖିଚି, ତମ ହାତରୁ ଖସି ପାଇନି । ନିଦରେ ଶୋଇ ବି ତମେ ବଳବଳେଇ ଉଠିଚ ! ଆଜ ମୁଁ କି ବେଳଟା ଠିକ୍ କରିବି ? ତମେ ଯଦି ଭାବିଥାଅ ଯେ ଏ ଘରଟା ଗୋଟାଏ ଇସ୍କୁଲ ଆଉ ତମେ ଜଣେ ମାଷ୍ଟର—ତା'ହେଲେ ତମେ ଦୟା କରି ରୁଟିନ୍‌ଟା ଠିକ୍ କରିଦିଅ ।

କୁନ୍ତ—ଥା ଉ ମ । କେତେଢ଼ ପାଟିଚେଁ କରୁଚ, ହେଇ—ହେମ ମା ଡେଣେ କଣ୍ଠ ନ ଜାଣିଲା ପରି ତା' ଦୁଆର ମୁହଁରେ ଆସି ଠିଆ ହେଲଣି ।

ଗୋବ—ଠିଆ ହଉ । ତମର କ'ଣ ଗଲା ?

କୁନ୍ତ—ତମେ ଅଫିସକୁ ଗୋଡ଼ କାଢ଼ି ଥିବ କି ନାହିଁ—ତୁନ କରି ଆସି ଗେଟ୍‌ହେଲ୍‌ରି ହେଇ କହିବ—"ବୋଧ୍ହ, ବାବୁ ଆଜି ଖାଇ କରି କଚେରୀ ଯାଇବନ୍ତି କି ? ପାଟି ତୁଣ୍ଡ ଲଗି ଥିଲା ଯେ, ବାବୁ ଯେମିତି ସୁଆରଟଳଙ୍କ—ତାଙ୍କ ପେଟକୁ ଭାତ ଯାଇ ନ ଥିବ । ଖାଲି ପେଟରେ କେମିତି କଚେରୀ କାମ କରିବେ କେଜାଣି ? ଇତ ତାକୁ ଦେଖିଲେ ଚଢ଼େ— କହେ, ବୁଢ଼ୀଟା ସବୁବେଳେ ଆସି ଆମ ଘର ଛିଦ୍ର ଖୋଜି ବୁଲୁଥିବ ।

ଗୋବ—( ଗୁପା ହସ ହସି ) ହୁଁ !

କୁନ୍ତ—କ'ଣ ହୁଁ ? ...କଥା ନାହିଁ ଖାଲି ହୁଁ ଆଉ ହସ !

ଗୋବ—ଗୋଟାଏ କଥା ମନେ ପଡ଼ିଲା । ହେମ ମା—ତମେ— ଆଉ ଦିନ ହେଲେ ମଧ, ଇତ—ତମେ ସମସ୍ତେ ଗୋଟିଏ ଜାତ—ଅର୍ଥାତ୍ ସ୍ତ୍ରୀ ଜାତ । ଅତଏବ କଥା କହିବା, କଥା ଶୁଣିବା...ଆଉ କଥାରୁ କଥା ବାହାର କରିବାରେ କିଏ କାହାଁକି ହଟିବ ? ଅରେ...ଅରେ ଏ କ'ଣ ଖବର କାଗଜଟା ହାତରୁ ଛଡ଼େଇ ନେଉଚ କାହିଁକି ?

କୁନ୍ତ—ପରେ ପଢ଼ିବ । ନ ହେଲେ ମୁଁ ଖାଇବେଳେ ପଢ଼ିଥିବ— ତମେ ଅଫିସରୁ ଫେରିଲେ ସବୁ ଖବର ତମକୁ ଶୁଣେଇ ଦେବ । ...କ'ଣ କହୁଥିଲଟି ? ହଁ ତେବେ ଜଣେ ପରା ସେଦିନ ଏ ଦୋକାନ ସେ ଦୋକାନ ବୁଲି ବାରଣା ପଇସା

ହେଇ ଏଡ଼େ ବଡ଼ ଗୃହଚଟା ଆଣି ଥୋଇ—ଏଇ ଦେଖ
ଭାଙ୍ଗି ଦ'ଖଣ୍ଡ !!

ଗୋବ—କିଏ ଭାଙ୍ଗିଲା ?

କୁନ୍ତ—ବଜ୍ରୁ କ ଇନ୍ଦ୍ର ।

ଗୋବ —ତମେ ତାଙ୍କୁ ପଚାରୁନ—

କୁନ୍ତ—ମୁଁ ପଚାରିଲେ ମତେ କହିବେ ! "ବୋଉକଙ୍କ" "ବୋଉକଙ୍କେ" ହେଇ ଇଏ ବେକ ଧରି ଓହଳ ପଡ଼ିବ ତ ସିଏ ପିଠିରେ ନାଲି ହେଇ ପଡ଼ିବ । ମତେ ଆଉ ବୋଲି ତାନ୍ ବଢେଇ ଦେବେ । ତେବେ ତାଙ୍କୁ ଡାକ ପଚାର । ମଝିରେ ୨ ଟିକିଏ ଅକଟ ନ କଲେ ସେ ଦେହ କିଛି ରଖିବେ ନାହିଁ । ଏ ମାସକ ଭିତରେ ତିନିଟା କାଚ ଜାର ଭାଙ୍ଗିଲେଣି ।

ଗୋବ—( ବଡ଼ ପାଟିରେ ) ବଜ୍ରୁ !

ବଜ୍ରୁ—( ଦୂରରୁ ) ଆଜ୍ଞା—

ଗୋବ— ( ବଡ଼ପାଟିରେ ) ଇନ୍ଦ୍ର !

ଇନ୍ଦ୍ର— ( ଦୂରରୁ ) ଆଜ୍ଞା—

ଗୋବ—ଦ'ହେଁ ଏଠିକି ଆସ । ( ବଜ୍ରୁ ଓ ଇନ୍ଦ୍ର ଆସିଲେ )

ବଜ୍ରୁ—(ଖୁବ୍ ଖୁସିରେ) କ'ଣ ବାପା କାହିଁକି ଡାକୁଚ ?

କୁନ୍ତ—ଛିଃ !

ଗୋବ—କଣ 'ଛି' ?

କୁନ୍ତ—ଏଇନେ ଦେଖି ଆସିଥିଲ, ଦ'ଟା ଯାକ ବଲେଇ ପରି କାମୁଡ଼ା କାମୁଡ଼ି ହଉଥିଲେ । ଆଉ ହେଇ ଦେଖ ! କିଛି ନ ଜାଣିଲା ପରି କେମିତି ମୁହଁକୁ ମୁହଁ ଯୋଡ଼ି ସାଙ୍ଗ ସୁଙ୍ଗା ହେଇ ଠିଆ ହେଇଛନ୍ତି ।

ଗୋବ—ଅରେ ବଜ୍ରୁ !

ବିଜୁ—ଅଜ୍ଞା !

ଗୋବ—ଚମଚ କିଏ ଭଙ୍ଗିଲ ?

ଗୋବ—ଚମଚ ? କୋଉ ଚମଚ ? ଚା ଚମଚ ? ଏଇ ପରା ବାପା
--ଏକ, ଦୁଇ, ତିନି, ଚାରି, ପାଞ୍ଚ— ଚା' ଚମଚ ପାଞ୍ଚଟାଯାକ
ଏ ଥାକ ଉପରେ ଥୁଆ ହୋଇଛି ।

କୁନ୍ତ—ଦେଖୁଛ ତା' ଆଗଚଲ ଢଙ୍ଗକୁ ! ଭଙ୍ଗା ଚମଚଟା ମୋ
ହାତରେ ଦେଖି କି ନ ଦେଖିଲ ଭଳି କେମିତି ଫିସାଦ୍
ବାହାର କରୁଛି ?

ବିଜୁ—ଏ ବଡ଼ ଚମଚଟା ଭାଙ୍ଗି ଯାଇଛି !! ····ହୋଇଛି ବାପା—
ଯୋଉଦିନ ତମେ ଏ ଚମଚ କିଣିକରି ଆଣିଲ ନାହିଁ, ମୁଁ
ମାପି କରି ଦେଖିଛି ପରା—ମୋ ହାତଠୁ ଚମଚଟା ଅଧରୁ
ଲମ୍ବା – ଏଇ ଦେଖନ୍ତୁ !!

ଗୋବ—ଚୁପ୍ ! ମୁଁ ପଚାରୁଛି ଚମଚ କିଏ ଭାଙ୍ଗିଲା, ନା ଚମଚଟା
ମୋ ହାତଠୁ ଲମ୍ବା !! କହ କିଏ ଭାଙ୍ଗିଛି ?

ବିଜୁ—(ଦବିଯାଇ) କିଏ ଭାଙ୍ଗିଛି ? କହନ୍ତୁ ଅପା କିଏଭାଙ୍ଗିଛି ?

ଗୋବ—ଅପା କ'ଣ କହିବ ? ଅପା କ'ଣ ଭାଙ୍ଗିଛି ?

କୁନ୍ତ—କଟେଲ ଲଚ୍ଛ ! ତୁ କାହିଁକି ଏମିତି ମୁହଁ ଭାରି କରି ଠିଆ
ହେଲୁଣି ? ତୁ ଭାଙ୍ଗିଛୁ ?

ଗୋବ—ଭାଙ୍ଗିଛୁ ଇଭି ? ·· କହ, ସତ କହ, ଭାଙ୍ଗିଛୁ ?
( ଇଭି ସୁଁ ସୁଁ ହୋଇ କାନ୍ଦିବାକୁ ଆରମ୍ଭ କଲାଣି )
ଏଇ ! ଆରମ୍ଭ ହୋଇଗଲା !! ଅଚ୍ଛା ନାକ—ବନ୍ଦୁସ୍ତ
ଝିଅଟା— କଥା କଥାକେ ସୁଁ··· ସୁଁ···!!···ଆଲୋ କାନ୍ଦୁଛୁ

କାହିଁକି ? କହ କ'ଣ କହୁଛୁ । ତୁ ଉଙ୍ଗିଥିଲେ ମୁଁ କିଛି କହିବି ନାହିଁ— କହ ।

(ଇନ୍ଦୁ କାନ୍ଦୁଥାଏ)

ଶଜୁ—ଅପା ନ କରେ କାନ୍ଦ ନାହିଁ କହୁଚି—କାନ୍ଦିଲେ ଏକା— କହିବ ।

ଇନ୍ଦୁ—(ରାଗିଯାଇ) କହିଲୁ ଦେଖି—

ବଜୁ—ଇନ୍ଦୁ ଶ୍ରୀ ନାକ କାନ୍ଦୁଣୀ ପୁରାଣେ·········

ଇନ୍ଦୁ—(କାନ୍ଦି ୨) ଦେଖ୍ ବୋଉ·

କୁନ୍ତ—ଶଜୁ ! ତୁ ପୁଣି ତାକୁ ଚିଡ଼େଇଲୁ ?

ବଜୁ—ସେ ପୁଣି କାହିଁକି କାନ୍ଦିଲା ? ଶ୍ୟାମ ଭାଇ ତ ମନା କରିଥିଲେ ତାକୁ କାନ୍ଦିବାକୁ ।

କୁନ୍ତ—ତୁ ବି ହ । ତୁ ଯେମିତି ତୋ' ଶ୍ୟାମ ଭାଇ ସେମିତି ।

ଗୋବି—କଥା କ'ଣ କୁନ୍ତଳା ! ଏ ନାକ କାନ୍ଦୁଣୀ ପୁରାଣ ପୁଣି କଣ ?

ଇନ୍ଦୁ—(ରାଗ ଓ କାନ୍ଦ ମିଶା ସ୍ୱରରେ) ତୁ ଆ' ଟୋକା— ମୁଁ ଦେଖୁଚି । (ଚାଲିଗଲା)

ଗୋବି—ଆରେ, ଆରେ···ଇନ୍ଦୁ ପଳେଇଲା ଯେ ?

କୁନ୍ତ— ବଜୁ ତ କହୁଥିଲା—ପୁଣି ତମେ କହିଲ । ସେ ଆଉ ରହିବନ୍ତା ?

ଗୋବି—ହେଲେ ଏ ପୁରାଣର ଇତିହାସ କ'ଣ ?

କୁନ୍ତ—କ'ଣ ତେତେ ପାଇବ ସେ କଥାରୁ ! ଟମା ବଡୁ ଅପା ଜ୍ୱାଇଁ ଶ୍ୟାମ ଆସି ନ ଥିଲା ? ଯ୍ୟାର, ଏ ନାକ କାନ୍ଦୁଣୀ ଢଙ୍ଗ ଦେଖି ତାକୁ ଗାଳି ହିସାବ କରି, ଥଟ୍ଟାରେ ଏ କଥା ଶ୍ୟାମ ବାହାର କରିଚି । ଯ୍ୟା ନାଁଟି ଇନ୍ଦୁ—

ଗୋବ—( ହସି ହସି ) ଓ ! ସେଇଥିରୁ ସେ ସୃଷ୍ଟି କରିଚ—
ଇତି ଶ୍ରୀ ନାକ କାନ୍ଦୁଣୀ ପୁରାଣେ !! ଆଜ ଏ ଟୋକା ତାଠୁଁ ଶିକ୍ଷ...

ବଜ୍ରୁ—ନାଇଁ ବାପା ମୁଁ ଶିଖି ନାହିଁ । ଶାମ ଭାଇ ମତେ ଶିଖେଇ ଦେଲେ । କହିଲେ ବଜ୍ରୁ, ଅପା ଯେତେବେଳେ ନାକରେ କାନ୍ଦିବ—କହିବୁ—ଇତି ଶ୍ରୀ...

ଗୋବ—ଚୁପ୍ ! ବଦ୍‌ମାସ୍ ଟୋକା ! ଟିକିବୋଲି ଗୃହଶତ୍ରୁ— ତା' କଥା ଶୁଣ !

ବଜ୍ରୁ—(ଡରିଯାଇ) ସେ ମତେ ଶିଖେଇ ଦେଲେ....

ଗୋବ—ଯା...ଅପାକୁ ସବୁ ବୁଝେଇ ଦୋଷ ମାଗିବୁ ଯା !...

ବଜ୍ରୁ—ଅପା......(ଚାଲିଗଲା)

କୁନ୍ତ—ହୁଁ, କ'ଣ ତା' ହେଲେ ହେଲା ?

ଗୋବ—ହେଲା ଆଜି କ'ଣ ? କିଛି ନାହିଁ ।

କୁନ୍ତ—ମୁଁ ପରା କୁଆଡ଼େ କାଗଜ ପଢ଼େଇ ଦେଇ ନ ଥିଲି ?

ଗୋବ—ଅଭିଯୋଗ ଟା କ'ଣ ମିଛ ? ଏଇ ପରା—କାଗଜଟା ଟେବୁଲ୍ ଉପରେ ପଡ଼ିଚି—ଆଜ ମୁଁ ଏକାନ୍ତ ଅସହାୟ ଶିଶୁଟି ପରି ଚଉକି ଉପରେ ବସିଚି ! ପଢ଼ିବାର ଜୁଅଛି ଭଲା ?

କୁନ୍ତ—ମୁଁ ତ କାଗଜ ପଢ଼େଇ ଦେଇ ନ ଥିଲି—ହେଲେ ଦିନ ଦି'ଟା ଆସି ତମକୁ ପାଠ ପଢ଼େଇ ଦେଇ ଗଲେ ତ ?

ଗୋବ—କ'ଣ, ଏଇ ପୁରାଣ ପାଠ ? ...ଇତି ଶ୍ରୀ...

କୁନ୍ତ—ଥାଉ—ତେବେ ଆଜି ତାଙ୍କ ସାଥିରେ ଦିନ ହେଇଯାଅ ନାଇଁ । ତୁମର କଥ ଭାଙ୍ଗିଚି, ସେ କଥା ବୁଝିବା ପାଇଁ ପରା ବଜ୍ରୁ—ଇତିକୁ ଡାକିଥିଲ ? କ'ଣ ବୁଝିଲ ?

ଗୋବ—ଅରେ ସତ୍ତ ତ ! ଧଡ଼େଁଫାଳ ଖସି ପାର୍ ! ଗୃହର ତେବେ ଭଙ୍ଗିଲ କିଏ ?

କୁନ୍ତ—ଆମ ମାଇପି ଜାତି ଟଗ୍ର କୁଅଡ଼େ କଥାରୁ ନଥା ବାହାର କରିବା ବିଦ୍ୟା ଜାଣନ୍ତି ? ଆଜ୍ଞା ତେମେ କ'ଣ ଜାଣ ? ତେମେତ ମୂଳରୁ ତଥାଟିକିକ ବାହାର କରି ପାରିଲ ନାହିଁ ।

ଗୋବ—ତମ କଥା ଶୁଣି ମୋର, ରାମାୟଣର ସେଇ ବିଖ୍ୟାତ ସୁନା ହରିଣ କଥା ମନେ ପଡ଼ୁଚି । ରାମ ସୀତା ଉଭୟେ ସୁନା ହରିଣ ଦେଖିଲେ । ଦେଖି ଖୁବ୍ ଖୁସି ହେଲେ । ଖୁସି ହବାର କଥା । କିନ୍ତୁ ସୀତାଦେବୀ ସେଇ କଥାରୁ ସୁନା ହରିଣକୁ ନିଜ ହାତ ମୁଠାରେ ପାଇବା ପାଇଁ ଜିଦ୍ ଧରି ବସିଲେ । ସ୍ତ୍ରୀ ଜନ୍ମ ଯେତେବେଳେ ପାଇଚନ୍ତି, ସୁନା ହରିଣକୁ ଦେଖି—ଛିଅ ଛାଡ଼ି ନ ଦେଇ ଖୁବ୍ ଜୋର୍‌ରେ ଟାଣି ଧରିଲେ । କିନ୍ତୁ ରାମଚନ୍ଦ୍ର କଲେ କ'ଣ ? ବିଚରା ପୁରୁଷ ଲୋକଟ ! ସୁନା ହରିଣର ମୂଳ କଥା—ଅର୍ଥାତ୍ ସୁନା ହରିଣ ଜନ୍ମହବା ଏକାବେଳକେ ଅସମ୍ଭବ, ଯଦି ବା ସମ୍ଭବ, ତେବେ ତା' ଏକ ବନବାସୀ ପରିବାର ପକ୍ଷରେ ଏକାବେଳେକେ ବେଦରକାରୀ—ଏଇ ମୂଳ କଥାଟି ଭୁଲିଯାଇ ହରିଣ ପଛରେ ଗୋଡ଼େଇଲେ ! ଅତଏବ ଏଥିରୁ ଏଇଆ ପ୍ରମାଣିତ ହେଲ ଯେ, ସୀତା ଥିଲେ ଏକାନ୍ତ ବୁଦ୍ଧିମତୀ···ଆଉ ରାମଚନ୍ଦ୍ର—

କୁନ୍ତ—ବୁଦ୍ଧୁ !! ଏଇଆ, ନା ? (ହସୁଥାନ୍ତି)

ଗୋବ—ହେଲେ କୁନ୍ତଳା, ସ୍ତ୍ରୀ ପରେ ଯୋଉ ଘଟଣା ଘଟିଲ ସେ କଥା ରାମଚନ୍ଦ୍ର ହୁଏତ ତାଙ୍କ ପରି କେବେ ଭୁଲିଯାଇଥିବେ—

କିନ୍ତୁ ସୀତା ସାତ ଜନ୍ମରେ ବି ଭୁଲିବା ସଂଭବ ନୁହେଁ ।
ଘର ସଂସାର କଲେ, ଛୁଆ ପିଲା ଥିଲେ କଜିଆ ଆସେ—
କଜିଆ ଭାଙ୍ଗେ—ଇଏ ଆଉ ନୂଆ କଥା କ'ଣ ? ଗୃହଦେବତା
ହୁଏତ ବଜ୍ର ଭାଙ୍ଗିଥିବ—ନାଇଁତ ଇନ୍ଦ୍ର ଭାଙ୍ଗି ଥିବ । ସାଧୁ
ସାଧୁତ ଭାଙ୍ଗେ ନାହାନ୍ତି ।.. ( ଟିକିଏ ଦୂରକୁ ଲକ୍ଷ୍ୟ କରି )
କିଏ ?

ସାଧୁ—ଆଜ୍ଞା ମୁଁ ସାଧୁ ! ( ଦୁଃଖାର୍ତ୍ତ ସାଧୁ ଆସିଲା )

ଗୋବ—କ'ଣ ହେଉଛି ସାଧୁ ?

ସାଧୁ—ଆଜ୍ଞା ! ମତେ ଦୋଷ ଦେଲେ ମୁଁ କ'ଣ କରିବି ?

ଗୋବ—କଓ, କିଛି ନ ଶୁଣି—ନ ବୁଝି ଦୋଷଗୁଣ କଥା କ'ଣ
ବାହାର କଲଣି ? କିଏ ତମକୁ ଦୋଷ ଦଉଛି ? ଏ ଗୃହଦେ
କେମିତି ଭାଙ୍ଗିଲା ?

ସାଧୁ—ଭାଙ୍ଗିଲା......?

ଗୋବ—ହଁ ପରା । ଦେଖି ପାରୁନ ? ଏଇ ଦେଖ । ତମେ ଭାଙ୍ଗିଚ ?

ସାଧୁ—ନା ଆଜ୍ଞା, ମୁଁ କାହିଁକି ଭାଙ୍ଗିବି ?

କୁନ୍ତି—ସାଧୁ ଭାଙ୍ଗିଚି ?

ସାଧୁ—ସିଏ କାହିଁକି ଭାଙ୍ଗିବ ?

ଗୋବ—ଆଉ କିଏ ଭାଙ୍ଗିଲା ? ବଜ୍ର ? ଇନ୍ଦ୍ର ?

ସାଧୁ—ନା...ନାଇଁ ଆଜ୍ଞା, ସେମାନେ କେହି ଭାଙ୍ଗି ନାହାନ୍ତି ।

ଗୋବ—ଆଉ ତେବେ କିଏ ଭାଙ୍ଗିଲା ତେମେ ଜାଣିନ ?

ସାଧୁ—ହଁ ଆଜ୍ଞା, ଜାଣିନି ।

ଗୋବ— ଜାଣିଚ—ଆଉ କହୁଚ କେମିତି ଇଏ ଭାଙ୍ଗି ନାଇଁ ସିଏ
ଭାଙ୍ଗି ନାଇଁ ।

ସାଧୁ—ସତ କହୁଚ ଆଜ୍ଞା, ତୁମେ ତ' ମନକୁ ଭୁଙ୍ଗେଇଲ ?

ଗୋବ—ବୁଝିଲ କୁନ୍ତଳା, ମୁଁ ଆଉ ପାରିବ ନାହିଁ । ଇଏ ମୋ କାମ ନୁହେଁ—ତମ କାମ । ଏ କଥାରୁ ନଥା ନେତମେ ବାହାର କର ।

କୁନ୍ତ—ହଇଏ ପୁଝାରୀ !

ସାଧୁ—ଆଜ୍ଞା !

କୁନ୍ତ—ତେମେ ଅଧି ଦରବୁଢାଟିଏ ହେଲଣି—ଏମିତ ପାଞ୍ଚ ବର୍ଷିଆ ଛୁଅଟିଏ ଭଳି କ'ଣ କଥା ବାଉଁ। କରୁଚ ?

ସାଧୁ—ମୋ' କଥାକୁ ତ ଆପଣ ହସି ଉଡ଼େଇ ଦେବେ—ମୁଁ ଆଉ କହିବ କ'ଣ ?

ଗୋବ—ସାଧୁ !

ସାଧୁ—ଆଜ୍ଞା !

ଗୋବ—ତେମେ ବୋମା ଦେଖିଚ—ବୋମା ?

ସାଧୁ—ଦେଖିଚ କ'ଣ ଆଜ୍ଞା ! କଲକତାରେ ଥିଲାବେଳେ କାପାମୀ ବୋମା ଅଙ୍ଗେ ନଭେଇଚ ପରା !!

ଗୋବ—ଗୋଟାଏ ପ୍ରକାର ବୋମା ଥାଏ—ଟାଇମ୍ ବମ୍ ! ଜାଣ ?

ସାଧୁ—ଟାଇମ୍ ବମ୍ ?

ଗୋବ—ଅମୁକ ଦିନ ଏତେଟା ବେଳେ ଫୁଟି ବାର କଥା—ଠିକ୍ ସେତକବେଳେ ତା ମନକୁ ଫୁଟିବ, କେହି ଫୁଟାଇବେ ନାହିଁ । ଜାଣ ?

ସାଧୁ—ଓ ! ହଁ ଆଜ୍ଞା, ସେ ବୋମା କଥା ମୁଁ ଜାଣେ ।

ଗୋବ—ଜାଣିଚ ତ ଆଉ ଏକଥା କହୁଚ କେମିତ ? ତୁମେଟା

କ'ଣ ଟାଇମ୍ ବମ୍ ହୋଇଚ ଯେ ତା'ମନକୁ ଭାଙ୍ଗିଲା ?

ସାଧୁ—ଆଜ୍ଞା ଆପଣ ଛୁଆମାନଙ୍କୁ କିର୍‌କେଟ୍ ଖେଳ ଦେଖେଇ ନେଇ ନ ଥିଲେ ?

ଗୋବ—ହଁ, ନେଇଥିଲି ତ ।

ସାଧୁ—ସେ ଖେଳ ଦେଖି ଆସି ଭାଇ ଭଉଣୀ ଦୁହେଁ ଅଗଣାରେ କିର୍‌କେଟ୍ ଖେଳ ଆରମ୍ଭ କରି ଦେଲେ । ମୁଁ ଝାଡ଼ାରେ ଥିଲାବେଳେ ତ କିର୍‌କେଟ୍ କଲ୍‌ବ୍‌ରେ ଚୃକସ୍ତ କରୁଥିଲି । ଏ ଖେଳର ହାଲ୍‌ହକିକତ୍ ମତେ ସବୁଜଣା । ମୁଁ ଆସି ବସି ଖେଳ ଦେଖିଲି ।

ଗୋବ—ହୁଁ ତମେ ବସି ଖେଳ ଦେଖିଲ—ଖେଳ ଚାଲିଲା ?

ସାଧୁ—ଆଜ୍ଞା—ଚାଲିଲା ବୋଲି ଚାଲିଲା ! ଭାଇ ବୋଲ୍ କରୁଥାନ୍ତି—ଭଉଣୀ ବ୍ୟାଟ୍ ଧରି ଥାନ୍ତି—ଖାଲି ବାଉଣ୍ଡରି ଉପରେ ବାଉଣ୍ଡରି । ... ଖେଳୁ ଖେଳୁ ଆଜ୍ଞା ବଲ୍‌ଟି ପାଚେରି ଡେଇଁ ଚାଲିଗଲା—ସାଧୁ ଯେତେ ଖୋଜିଲା—ପାଇଲା ନାହିଁ ।

କୁନ୍ତ—କୋଉ ବଲ୍ ?

ସାଧୁ—ସେଇ ଯୋଉ ନାଲିଆ ବଲ୍‌ଟା ମା—ପଦରଶମାରୁ କଣା ହୋଇଥିଲା !

କୁନ୍ତ—ଶୁଣୁଚ ! ଟଙ୍କାଟାଏ ଦେଇ ବଲ୍ କଣା ହୋଇଥିଲା—ସେଇଟା ବି ଗଲାଣି ।

ଗୋବ—ଅରେ ବଲ୍‌ତ ଗଲା—ଏ ଚ୍ୟାମଚ ଭାଙ୍ଗିଲା କେମିତି, ସେ କଥା କହ ।

ସାଧୁ—କହୁଚ ଆଜ୍ଞା ! ବଲ୍ ହଜଚଲେ କ'ଣ ବକୁରାବୁ ଛାଡ଼ନ୍ତି ନେଇ ! ସାଧୁଙ୍କୁ କହୁଲେ—ସାଧୁ ଗୋଟାଏ ଗୋଟା ଦେଖି କଣ୍ଢା ଅମୃତଭଣ୍ଡା ଟୋକି ଆଣି ଦେଲା । ପୁଣି ଖେଳ ଚାଲିଲା । ସାନ ବାବୁ କହିଁକି ବୋଲ୍ କଲେ—ଇଡ ମା' ବ ବେକାସ୍ ଜୋରରେ ବ୍ୟାଟ ଉଠେଇ ପିଟିଲେ—ବ୍ୟାଟ ଭାଙ୍ଗି ଦୁ' ଖଣ୍ଡ ଆଉ ଏଣେ ଅମୃତଭଣ୍ଡା ଛୁଟିକି ଯାଇ ଗୋଟେପେଇଘରେ ପଶି ଘିଡ ହାଣ୍ଡି ଭିତର ଗଲା !!

କୁନ୍ତ—ଏଁ ଘିଅହାଣ୍ଡି ଭାଙ୍ଗି ଚ—ସେଇ ବଡ଼ ଘିଡ ହାଣ୍ଡିଟା !!···

ସାଧୁ—ହଁ ମା,— ସେଇ ହାଣ୍ଡି ।

କୁନ୍ତ—ତେବେ ଏତେ ବେଳ ଯାଏ ମତେ କହୁନ ?

ସାଧୁ—କହୁବ ବୋଲି ଚରି ଆସୁଥିଲି ।

ଗୋବ—ଆଚ୍ଛା ନେଳ ଏ !! ଦୁନିଆ ଯାକର ଭଙ୍ଗା ଛୁଙ୍କା ଖବର ଆଣି ଦଉଚ—ଗୁମଚଟା କେମିତି ଭାଙ୍ଗିଲା କହୁନ !

ସାଧୁ—କହୁଲି ତରି ଆଜ୍ଞା ! ବ୍ୟାଟ୍ ଭାଙ୍ଗି ଦୁ' ଖଣ୍ଡ ।

ଗୋବ—ଶୁଣୁଚ ! ମୁଁ ଦଚ୍ଛୁଚୁଛି ଗୁମଚ—ସେ କହୁଚ ବ୍ୟାଟ୍ !

ସାଧୁ—ବ୍ୟାଟ୍ କାହିଁ ଆଜ୍ଞା ! ଏଇ ଲମ୍ବା ଗୁମଚଟାକୁ ତରି···

ଗୋବ—ଓ, ତେବେ ଗୁମଚଟାକୁ ବ୍ୟାଟ୍ କରି ଖେଳ ହଉଥିଲା ।

ସାଧୁ—ଆଜ୍ଞା, ଆପଣ ତ ତାଙ୍କୁ ବ୍ୟାଟ୍ କିଣି ଦେଇ ନାହାନ୍ତି— ସେ କରନ୍ତେ କ'ଣ ? ଗୁମଚଟା ଯେମିତି ଭାଙ୍ଗିଗଲା, ଘିଅ ଭଉଣୀ ଦୁହେଁ ହଇଗଲେ । ଇଏ କହୁଲେ ତୁ ଭାଙ୍ଗିଚୁ— ସିଏ କହୁଲେ ତୁ ଭାଙ୍ଗିଚୁ । ମତେ ସାକ୍ଷୀ ମାନଲେ—ମୁଁ

ବାପଲେ— ମା ଲେ କର ବୁଝେଇ ଦେଇ କହିଲ—ଖେଳୁ ଖେଳୁ ତ ଗୃହଚଟା ଭାଙ୍ଗି ଗଲ—କିଏ କାହିଁକି ଭାଙ୍ଗିବ ? କେହି ଭାଙ୍ଗି ନାହାନ୍ତି—ଯାଅ ।

ଗୋବ—ଦହେଁ ସେଇଠୁ ବୁଝିଗଲେ, ନା ?

ସାଧୁ—ଆଜ୍ଞା ତାକ ଚତୁଣ ନାହାନ୍ତି—ଦହେଁ ମହାଖୁସି ।

ଗୋବ—ବୁଝିଲ କୁନ୍ତଳା—ସାଧୁ ସିନା ଘୁଙ୍ଗାସ ଟ୍ରକସ କଟେ—ତା' କୋଡ଼ିଏ ବର୍ଷ ଟ୍ରକସ ଜୀବନ ଭିତରେ ପଚିଶି ଜାଗାରେ ଟ୍ରକସ କର ଏଟି ଆଖି ହରିଶିରେ ପହଞ୍ଚୁ—ହେଲେ ତା' ବାଟ୍ଟରଟା କେମିତ ଦେଖିଲ ? କେତେ ବଡ଼ ଗୋଟାଏ ମକଦ୍ଦମାରୁ ବଜୁ ଇତ ଦହିଁଙ୍କି କେମିତି ଖଲସ କର ଦେଇଚ !!

କୁନ୍ତ—ତେବେ ବସି ଏଇଥ ଶୁଣୁଥା—ତେଣେ ପର ଭାତହାଣ୍ଡି ଭାଙ୍ଗିଚ ! ··· ହଇଓ ସାଧୁ, ହାଣ୍ଡି କେତେବେଳେ ଭାଙ୍ଗିଲ ?

ସାଧୁ—ଆଜ୍ଞା, କାଲ ଉପର ବେଳ । ଆପଣ ଯେତେବେଳେ ଛାତ ଉପରେ ଓକିଲ ବାବୁଙ୍କ ସଙ୍ଗେ ସାଙ୍ଗରେ ଦୁଃଖ ସୁଖ ହଉଥିଲେ, ସେତିକବେଳେ । ରାତିବେଳା ତ ଆମର ଭାତ ରନ୍ଧା ହଏ ନାହିଁ—ଅଜ ସକାଳୁ···

କୁନ୍ତ—ଅଜ ସକାଳୁ ବେଳେଇ ପୁଣି କେମିତି ହଉଚ ?

ସାଧୁ—(ଥଙ୍ଗ ଥଙ୍ଗ ହେଇ) ସେତେଇ ! ··· ଅସୁନାହାନ୍ତି ମା— ସେତେଇ ଘରକୁ ଆସନ୍ତୁ—

କୁନ୍ତ—ହଉ ଚାଲ (ଯାଉ ଯାଉ ) ତାଙ୍କର ତେଣେ ଅଫିସ୍ ବେଳ ହେଇ ଗିବଣି । (ଦୁହିଁଙ୍କର ପ୍ରସ୍ଥାନ)

ଗୋବ—ଅଫିସ୍ ବେଳ ! ! କେତେଟା ବାଜିଲଣିକି ? (ଘଣ୍ଟା ଦେଖି) ଇରେ ବାପ୍‌ରେ…(ଚଡ଼ଉଠିରେ) ସାଢ଼ୁ ! ମା'ଙ୍କୁ କହ ମୋତେ ଆଜି ଦେଉନାହିଁ—ମୁଁ ପାଣି ବାଲ୍‌ଟିଏ ଢାଳି ହେଇ ପଡ଼ୁଚି—ତେମେ ତେଣେ ବଢ଼ା ବଢ଼ି କର ।

(ବସ୍ତାନି ଧରି ବିଜୁ ଓ ଇତି ଆସିଲେ)

ଇତି—ବାପା—ଆମେ ସ୍କୁଲ୍‌କୁ ଯାଉଚୁ !

ଗୋବ—ଖାଇଦିଇ ଯାଉଚ ତ ?

ବିଜୁ—ହଁ, ବାପା—ଆମର ଟେଟାଢ଼ି ଘଡ଼ି…ରେଡ଼ି !

ଗୋବ—ହଉ ଯାଅ । ତେଲ ବୋତଲଟା କ'ଣ ହେଲା… (ଚିଡ଼ିଯାଇ) ଅରେ ତେଲ ବୋତଲଟା କାହିଁ ?

ଇତି—ତେଲ ବୋତଲ ? ମୁଁ ମୁଣ୍ଡ ବାନ୍ଧୁଥିଲି—ସେଘରେ ଅଛି ।

ଗୋବ—ଯା' ଆଣ୍ ଦେଲ ।

ଇତି—ଯାଉଚି । (ଚାଲିଗଲା)

ଗୋବ—ଗୁରୁଏ ଏଣୁ ତେଣୁ କଥାରେ ସମୟ ନଷ୍ଟ ହେଲା ! ଆଜି ଠିକ୍ ସାଢ଼େ ଦଶ୍‌ରେ ନ ପହଞ୍ଚିଲେ ସବୁ ଗୋଳ ମାଳ ।
(ବୋତଲ ନେଇ ଇତି ଆସିଲା)

ଇତି—ଏଇ, ନିଅ ବାପା !

ଗୋବ—ବେଳ ହୋଇଗଲାଣି, ଯାଅ—ଠିଆ ହେଲ କାହିଁକି ?

ଇତି—ଚାରଣା ପଇସା ଦିଅ ବାପା !

ଗୋବ—ପଇସା କ'ଣ ହବ ?

ଇତି—ଆମ ଅଙ୍କ ଦଦଙ୍କର ବଦଳି ହେଉଚି—ତାଙ୍କୁ Farewell ଦିଆଯିବ—ଚାନ୍ଦା !

ଗୋବ—ଅରେ, ଏଇ ସେଦନ ପଗ୍ କଣ Farewell ଗୃନ୍ଦା ନେଇଥିଲୁ ?

ଇଶ—ସେଦନ ନେଇଥିଲ ସିଲେଇ ଦଦଙ୍କ ପାଇଁ—ଅଜ ଅଙ୍କ ଦଦ ।

ଗୋବ—ଅଚ୍ଛା Farewell ପାଳ ସ୍ୱା'ଙ୍କର ଜଟିଶ—ମାସକୁ ଦଶଟା !···ଅରେ ମୋ' ଛଡ଼ଲଅ କ'ଣ ହେଲ—ଛଡ଼ଲଅ ? ଗ୍ୱଧୁ; ମୋ ଛଡ଼ଲଅ କାହିଁ ?

ବଜୁ—ଗ୍ୱଧୁ ନାହିଁ ବାପା—ବଜାରକୁ ଯାଇଛୁ ।

ଗୋବ—ଛଡ଼ଲଅଟା କ'ଣ ହେଲ ?

ଇଶ—ହଇରେ ବଜୁ, ତୁ ପଗ୍ କୋଠା ଉପରେ ବାପାଙ୍କ ଛଡ଼ଲଅ ପାର ଛଦରେ ଅଠାମାର ଶୁଖାଉ ଥିଲୁ—ଆଣିଚୁ ?

ବଜୁ—ନାଇଁଲେ ଅପା—ଆଣିନ ।

ଗୋବ—ବଦମାସ୍ ଟୋକା—ଯା ଚଞ୍ଚଳ ଅଣ ! (ବଜୁ ଗ୍ୱଲଗଲ) ମଣିଷ ଯେତେ ତରତର ହଉଚ—ଏ ଗୁଡ଼ାକ ସେତକ ପଛରୁ ଟାଣି ଧରୁଚନ୍ତ ! !—କରେ, ଆଣିଲୁ ?

(ଛଡ଼ଲଅ ଧର ବଜୁ ଆସିଲ)

ବଜୁ—ହଁ ବାପା—ଦ' ଷେଠାରେ ଯାଇ ନେଇ ଆସିଲ—ନଅ ।

ଇଶ—ଦଅ ବାପା—ପଇସା ଦଅ ।

ଗୋବ—ଯା ଭକ୍—ପଇସା ଫଇସା କଛୁ ନାହିଁ । ( ଗ୍ୱଲଗଲେ)

(ଇଶ ସୁଁ ସୁଁ ହୋଇ କାନ୍ଦଲ)

ବଜୁ—ଏ ଅପା—କାନ୍ଦ ନାଇଁ କହୁଛୁ—ପୁଣି ନାକ ସୁଁ ସୁଁ କର ନାଇଁ କହୁଚ ।

ଇତ—ଚୁପ୍ ! ପାଜି ବଦ୍‌ମାସ । ( କାନ୍ଦୁଥାଏ )
ବଜୁ—ପୁଣି କାନ୍ଦିଲ ? କହିବ—କହିବ ଏଇନେ ?
ଇତ—କ'ଣ କହିବୁ ? ( ସେମିତି କାନ୍ଦୁଥାଏ )
ବଜୁ—ଇତ···ଶ୍ରୀ···ନାକ କାନ୍ଦୁଣୀ ପୁରାଣେ···
ଇତ—( ବଜୁକୁ ମାରି ) ଚୋ···ପ୍···
ବଜୁ—( କାନ୍ଦି ୨ ବଡ଼ ପାଟିରେ ) ଏଇ ଦେଖ ବାପା—ଅପା ମତେ ମାରୁଚ ! ଇତ—ଶ୍ରୀ—ନାକ୍ କାନ୍ଦୁଣୀ—ଇତ-ଶ୍ରୀ-ନାକ୍ କାନ୍ଦୁଣୀ··· (ଇତ ଜୋର୍‌ରେ କାନ୍ଦୁଥାଏ )
ଗୋବ—( ଗାଧୁଆ ଘରୁ ବଡ଼ ପାଟିରେ ) ଆରେ, ତେମେ ମତେ ଗାଧୋଇ ଦବ ନାହିଁ ନା କ'ଣ ?···ଏ ଇତ—ବଜୁ—ଦେଖିବ ଏଇନେ ! ଆରେ କାହିଁକି ସେମିତି ହେଉଚ ?··· ଇତ—ସେଇ ଟେବୁଲ୍ ଡ୍ରୟ ଭିତରେ ପଇସା ଅଛି, ନେଇଯା···।
ବଜୁ—ଆ ଅପା, ଆଉ କାହିଁକି କାନ୍ଦୁଚୁ ? ପଇସା ଆଣି—ଆ । (ଇତ ଡ୍ରୟରୁ ପଇସା ନେଲା । ଦୁହେଁ ଚାଲିଗଲେ)

---

[ ଦ୍ୱିତୀୟ ଦୃଶ୍ୟ । ରୋଷେଇ ଘର । ଅପରାହ୍ଣ ପରି ସାଧୁ ଠିଆ ହେଉଚ । ପାଖରେ କୁନ୍ତଳା ]

କୁନ୍ତ—ତେମେ କ'ଣ ପିଲା ହେଉଚ ସାଧୁ—ପର ଘରେ ଖଟି ୨ ତମ ଜୀବନ ଗଲାଣି—ତେବେ ବି ତମର ଅକଲ ହେଉନ ? ଏଇ ବୁଦ୍ଧି ତମର ?
ସାଧୁ—ମୁଁ ଆଉ କ'ଣ କରିଥାନ୍ତି ମା' କହିଲ ?
କୁନ୍ତ—ପୁଣି ଏ କଥା ତେମେ କହୁଚ ? ମତେ ଏଇଆ ଦେଖାଇବାକୁ ତେମେ ରୋଷାଇଘରକୁ ଡାକି ଆଣିଥିଲ ?···

ମୁଁ ଚଣ୍ଡାଳୁଣୀ ତ ଗୃହଲ ମାପି ଦେଇ ପିଲାଙ୍କୁଅଙ୍କ ନେଞ୍ଜାଗରେ ସିଅଡ଼େ ରହିଲ—ମୁଁ ସକାଳୁ ସେପେଇ ଘରକୁ ଆସିଥେଲେ ଏ ଅବସ୍ଥା ହେଇଥାନ୍ତା କାହିଁକି ?

ସାଧୁ—ସିଧୁ ଏଇନେ ବଜାରରୁ ପଳେଇ ଆସିବ ।

କୁନ୍ତଳା—ତୁନିହ' । ସେ ଆସିଲେ କେତେ, ନ ଆସିଲେ କେତେ ? ମୁଁ ଏବେ କରିବ କ'ଣ ? ତାଙ୍କର ତ' ଅଫିସ୍ ବେଳ ହୋଇ ଯାଉଚି ବୋଲି ସେ ଉଚ୍ଛନ୍ନ ହେଲେଣି ।

(କଥା କହୁ କହୁ ଗୋବର୍ଦ୍ଧନ ବାବୁ ଆସିଲେ)

ଗୋବ—ଅଜ ଠିକ୍ ସାଢ଼େ ଦଶଟାରେ ବଜେଟ୍ ଫାଇଲ୍ ଆଲୋଚନା ହେବ । ସମସ୍ତେ କଣ୍ଟାଏ କଣ୍ଟାଏ ଆସି ପହଞ୍ଚିବେ । ମୁଁ ଡେରିକଲେ ଆଉ ରକ୍ଷା ଅଛି ?…କ'ଣ ? ବଢ଼ାବଢ଼ି ହେଲାଣି ? ଇଏ କ'ଣ ?… କଥା କ'ଣ କୁନ୍ତଳା ? ଇଏ କ'ଣ ହେଇଚି ?

କୁନ୍ତଳା—ତମ ଗୁଣମଣି ପୁଅମାନଙ୍କ ଗୁଣ ।

ଗୋବ—କଉ ସାଧୁ ?

ସାଧୁ—ଆଜ୍ଞା—ମୁଁ ଆଉ କ'ଣ କରିବ ?

ଗୋବ—ତେମେ କ'ଣ କରିବ, ସେ କଥା ମୁଁ ଶୁଣିବାକୁ ଗୃହୁଁ ନ—ତମେ ଇଏ କ'ଣ କରିଚ କୁହ ।

ସାଧୁ—ଆଜ୍ଞା…

ଗୋବ—ପୁଣି ଆଜ୍ଞା, ଆଜ୍ଞା ହଉଚ ?

ସାଧୁ—ଆଜ୍ଞା, ଅଜ ମହାନ୍ତ—ନୂଆହାଣ୍ଡି ସେପେଇଟରେ ପୂରାଇ ବାକୁ ମା' ରାଜି ହୋଇ ନ ଥାନ୍ତେ ।… ଏଣେ ଅପଣ ଡେକେଟ୍ ହାଣ୍ଡି ରନ୍ଧା—ଭାତ ଖା'ନ୍ତି ନାହିଁ । ସେଥିପାଇଁ ଏ ଷ୍ଟୋଭ୍ ହାଣ୍ଡିଟା ବସାଇ ଦେଇଥିଲି ।

କୁନ୍ତ—ଗ୍ଲେଟ ହାଣ୍ଡିଚ ବସାଇଥିଲ—ଦେବତସେର ଯାଇ ଗୃଜଲ
ସବୁ ଅଣି ଅଜାଡ଼ ଦେଲ କାହିଁକ ?
ସାଧୁ—ସେତକ ଅଟକଲ ତ' ମୋର ରହୁଲ ନାହିଁ—
ଗୋବ—ମୁଁ କଛୁ ବୁଝି ପାରୁନ—ଏ ହାଣ୍ଡି ଭଙ୍ଗି ଭାତ ଚୁଲାରେ
ପଶିଲ କେମିତ ?
ସାଧୁ—ଗ୍ଲେଟ ପାତଳା ହାଣ୍ଡି—ତା'ର ଜୁ କେତେ ? ଭାତ ଫୁଲି
ଉଠିଲ ବେଲକୁ ମୁଁ ଯେମିତ ଟିକଏ ଚଟୁମାର ଦେଇଛୁ—
ହାଣ୍ଡି ଫାଟି ଏ ଦଶା ! ସଂକାନ୍ତ ହଜପଡ଼େ—ନୂଆ ହାଣ୍ଡିଟେ
ପାଇଁ ସାଧୁକୁ ବଜାରକୁ ଦଉଡ଼େଇ ଦେଇ—ମା'ଙ୍କୁ ଏକଥା
ଜଣାଇବାକୁ ଗଲ ।
ଗୋବ—ହଉ—ହଉ— ଖୁବ୍ କରଚ—ମା'ଙ୍କୁ ଖୁବ୍ ଜଣା
ଇରଚ !! (କୁନ୍ତଳାକୁ) ତମେ ଗୋଟାଏ କାମ କର—ମତେ
ଟିକଏ ସର୍ବତ କରଦଅ । ମୁଁ ଖାଇକର ଅଫିସ୍ ଯାଏ—
ତମେ ପରେ ସାଧୁ ହାତରେ ଭାତ ପଠେଇ ଦବ ।
କୁନ୍ତ—ହଉ । (ପ୍ରସ୍ଥାନ)
ଗୋବ—ସାଧୁ !
ସାଧୁ—ଆଜ୍ଞା !
ଗୋବ— ଏଠି କେତେ ବର୍ଷ ଚାକର କଲଣି ?
ସାଧୁ—ପାଞ୍ଚ ବର୍ଷ ।
ଗୋବ—ଆଉ କେତେ ବର୍ଷ ଚାକରି କରିବାର ଇଚ୍ଛା ?
ସାଧୁ—ଆପଣଙ୍କ ଦୟା·····
ଗୋବ—ଦୟାଟା ମୁଁ ନ କର ଯଦି ତମେ କରବ, ତା' ହେଲେ
ଅନ୍ତତଃ ଆଉ ପନ୍ଦରବର୍ଷ ତମର ଏଠି କଟିଯିବ—ବୁଝିଲ ?
ସାଧୁ—ଆଜ୍ଞା ! (ସର୍ବତ ନେଇ କୁନ୍ତଳା ଆସିଲେ)

କୁନ୍ତ – ସବୁଠ ନାଅ । (ଗୋବର୍ଦ୍ଧନବାବୁ ସବୁଭ ଫେରିଲେ)

ଗୋବ—ହଉ ମୁଁ ଯାଉଚି । (ସମସ୍ତେ ଅଗଣାକୁ ଆସିଲେ)

କୁନ୍ତ—ଏମିତି ଉପାସଠାରେ ଗଲ ? ···

ଗୋବ—ଆଉ ଉପାୟ କ'ଣ କହ ?···ଆରେ ମୋ ସାଇକଲ୍ ? ସାଇକଲ କ'ଣ ହେଲା ?···ଏଠୁ ସାଇକଲ୍ କିଏ ନେଲା ?

କୁନ୍ତ— ମୁଁ ତ ଜାଣି ନାହିଁ ।

ସାଧୁ—ଆଜ୍ଞା, ଗୁଧୁ ସାଇକଲ ନେଇ ବଜାରକୁ ଯାଇଛି ହାଣ୍ଡି ପାଇଁ ।

ଗୋବ— କି ଆଶ୍ଚର୍ଯ୍ୟ କଥା ! ତା'କୁ କିଏ କହିଲା ମୋ ସାଇକଲ ନବାକୁ ? ଆଜି ସେ ଗୁଧୁ କଥା ମୁଁ ବୁଝୁଚି ! କୁନ୍ତଳା, ବଜାରରୁ ଆଇଲାମାତ୍ରେ ଗୁଧୁକୁ ମୋ ପାଖକୁ ପଠେଇ ଦବ ।

ଗୁଧୁ—(ଅଳ୍ପ ଦୂରରୁ) ମୁଁ ଆଇଲିଣି ଆଜ୍ଞା, ଆଇଲିଣି ।

ଗୋବ—ତୁ ଆ ଏଠିକି ପାଜି !!···କିରେ, ଏ କ'ଣ, ସାଇକଲ୍ କାହିଁ ? (ହାତରେ ଗୋଟାଏ ବଡ଼ହାଣ୍ଡି ଧରି ଗୁଧୁ ଆସିଲା)

ଗୁଧୁ—ଆଜ୍ଞା, ସାଇକଲ୍···

ଗୋବ—ଆରେ ସାଇକଲ୍ କ'ଣ ହେଲା ?

ଗୁଧୁ—ଆଜ୍ଞା, ଏ ହାଣ୍ଡିଟା ପରି ଆଣିଲି । ଟିକିଏ ବସନ୍ତୁ ଆଜ୍ଞା, ନାନାଙ୍କ ହାତ ଭରି ଫୁର୍ତ୍ତି·····ପାଞ୍ଚ ମିନିଟ୍‌ରେ ହେଇଯିବ ।

କୁନ୍ତ—ହାଣ୍ଡି ତ ଆଣିଲୁ—ସାଇକଲ୍ କାହିଁ ?

ଗୁଧୁ—କି' କଥା କହୁଚ ମା' ? ସାଇକଲ୍‌ରେ ବସି··· ଏତେ ବଡ଼ ହାଣ୍ଡିଟେ ଆଣି ଥାନ୍ତି କେମିତି ? ଦୋକାନରେ ରଖି ଦେଇ ଆସିଚି ।

ଗୋବ—ଶୁଣୁଚ କୁନ୍ତଳା…ଯା କଥା ?

ଗୁଧୁ—ଗୃହ ପକେଇ ଦେଇ ଅସିଚ ଆଜ୍ଞା, ଚାହା ଘରେ ଦୋକାନି ।

ଗୋବ—ଚୁପ୍! ବଦ୍‌ମାସ୍ !… କୁନ୍ତଳା…ଏଇମାନଙ୍କ ପାଇଁ ମୋ ଗୃହକର୍ମ ଗଲ ବୋଲି ଜାଣ । ମୁଁ ଏବେ ଯିବ କମିତ ? ହାତରେ ମୋଟେ ଆଉ ପାଞ୍ଚମିନଟ୍ ବେଳ ।

ଗୁଧୁ—ପାଞ୍ଚ ମିନଟ !…ମୁଁ ଯାଉଚ ଅଜ୍ଞା ସାଇକଲଟା ନେଇ ପଳେଇ ଆସେ । (ହାଣ୍ଡିଟା ଧରି ଚାଲି ଯାଉଥିଲା) ?

ସାଧୁ—ଅରେ ଗୁଧୁ, ହାଣ୍ଡିଟା ନେଇ କୁଆଡ଼େ ପଳଉଚୁ ?

ଗୁଧୁ—ଅରେ, ସତେ ତ ! ଏଇ ନଅ ହାଣ୍ଡିଟା ରଖ, ମୁଁ ଅସେ । (ହାଣ୍ଡିଟା ସାଧୁକୁ ଦେଇ ଯାଉଥିଲା)

ଗୋବ—ଏ ଗୁଧୁ !

ଗୁଧୁ—ଆଜ୍ଞା !

ଗୋବ—ଚୁଲ୍‌କର ଯା' ଛକ ଉପରୁ ଗୋଟେ ରିକ୍‌ସା ଡାକ ଆଣ୍ ।

ଗୁଧୁ—ରିକ୍‌ସା—(ଦୂରରୁ ରିକ୍‌ସା ଘଣ୍ଟି ଶୁଣିଲା)

କୁନ୍ତଳା—ଏଇ ରିକ୍‌ସାଟାଏ ଅସୁଚ ନା' କଣ ?

ଗୁଧୁ—(ବାହାରକୁ ଲକ୍ଷ୍ୟକରି) ଏ ରିକ୍‌ସା ରହ—ବାବୁ ଅଫିସକୁ ଯିବେ—ରହ ।(ଗୋବର୍ଦ୍ଧନ ବାବୁଙ୍କୁ) ଆସନ୍ତୁ ଅଜ୍ଞା, ରିକ୍‌ସା ରହିଲାଣି—ଆସନ୍ତୁ ।

ଗୋବ—ହଉ, ମୁଁ ଅଫିସ୍‌କୁ ଫେରିଛମମାନଙ୍କ କଥା ବୁଝିବ ।

(ପ୍ରସ୍ଥାନ)

---

## ଏ ଚିତ୍ରରେ ଅଛନ୍ତି—

ଗୋବର୍ଦ୍ଧନ ବାବୁ—ଗୃହସ୍ୱାମୀ

କୁନ୍ତଳା—ତାଙ୍କ ସ୍ତ୍ରୀ

ଇନ୍ଦୁ—ତାଙ୍କ ଝିଅ

ବିଜୁ—ତାଙ୍କ ପୁଅ

ସାଧୁ—ତାଙ୍କ ପୂଜାରୀ

ରଘୁ—ତାଙ୍କ ଭୃତ୍ୟ

# ଦ୍ୱିତୀୟ ଚିତ୍ର

## ପ୍ରଥମ ଦୃଶ୍ୟ

[ଗୋବର୍ଦ୍ଧନ ବାବୁଙ୍କ ଘର । ପରମ ତୃପ୍ତି ସହକାରେ
ଭୋଜନ ସମାପ୍ତ କରି ଗୋବର୍ଦ୍ଧନବାବୁ କୋଠରୀ
ଭିତରକୁ ଆସିଲେ । ପଛେ ପଛେ
କୁନ୍ତଳା ଦେବୀ ।
ସମୟ—ପୂର୍ବାହ୍ଣ]

ଗୋବର୍ଦ୍ଧନ—ଜୀବନରେ ଆଜ ଏକା ଏଇଟା ଗୋଟାଏ ଦିନ !

କୁନ୍ତଳା—କାହିଁକି ସ ? କଣ ଏମିତି ହେଲା କି ?

ଗୋବ—ଦିନ ଦଶଟା ବେଳକୁ ଯା' ଭାଗ୍ୟରେ ଦରଫୁଟା ଭାତ ଦି'ଟା ମିଳିବା ମୁସ୍କିଲ ହୋଇ ପଡ଼େ, ଆଜ ଏଇ ସାଢ଼େ ନ' ନ ବାଜୁଣୁ ଭାଗ୍ୟରେ ତା'ର ଭୂରି ଭୋଜନ !!

କୁନ୍ତ—ଓଃ ! ଭାରି ତ ଗୋଟାଏ କଥା—

ଗୋବ—ଆଜ ବୋଧହୁଏ ସ୍ୱୟଂ ଅନ୍ନପୂର୍ଣ୍ଣା ବେଶ୍ ହୋଇ ଶାଳକୁ ବଜେ ହୋଇଥିଲେ ?

କୁନ୍ତ—ହୋଇଥିବ ଭଲ ମୁଁ ନଯାଏ ? ହେଲେ, ଯାଇ କରିବ ବ'ଣ ? ତମର ଯୋଡ଼ ଗୁଣମଣି ପୁଅମାନଙ୍କ ଅଛନ୍ତି ?

ଗୋବ—ପାନ ଦିଅ ।

କୁନ୍ତ—ଟେବଲ୍ ଉପରେ ଥୁଆ ହୋଇଛି ସବୁ ।

ଗୋବ—ବାଃ ବାଃ ! ଉତ୍ତମ ଭର୍ତ୍ତି ! ପାଚିଲା ମଚ ମଚ ପାନ !
କଥା କ'ଣ କୁନ୍ତଳା ?

କୁନ୍ତ—କଥା ମୋ ପାଖରେ କିଛି ନାହିଁ ଯେ, ତମେ ଟିକିଏ
ରହସ୍ୟ କଥାକୁହ । ଏକାବେଳକେ ବଦଳେଇ ପଡ଼ୁଛ ।

ଗୋବ—ନା କୁନ୍ତଳା, ଇଏ କେବଳ ଗୃହିଣୀର କର୍ତ୍ତବ୍ୟ—ବୋଧ
ନୁହେଁ । ତମ ମନ ପ୍ରାଣ ଯେ ଆଜି ଆନନ୍ଦରେ ଚହଲି
ଉଠୁଛି·····

କୁନ୍ତ—ହେଇଛି, ଅଫିସ ବେଳ ଯଦି ହୋଇନ, ଏ ଖଟ ଉପରେ
ଟିକିଏ ଗଡ଼ ପଡ଼ ହୁଅ । ଏମିତି ପିଲାଙ୍କ ପରି ଏସବୁ ଗପୁଛ
କ'ଣ ?

ଗୋବ—କାହିଁକି କୁନ୍ତଳା, ମନ ଖୁସି ହବାଟା ତ ଗୋଟାଏ
ଅପରାଧ ନୁହେଁ । ତା' ଛଡ଼ା, ତମ ମନ ଆଜି ଖୁସି ହବାର
ଯଥାଯଥ କାରଣ ରହିଛି ।

କୁନ୍ତ—ଏଇ ଯେ ସୁଅ ଆଜି ଟ୍ରାଲକ—ସହଜରେ ବନ୍ଦ ହବାର
ନୁହେଁ । ମୁଁ ଯାଏଁ—

ଗୋବ—ଶୁଣ କୁନ୍ତଳା । ତମ ମନ ଖୁସିର ପ୍ରଥମ କାରଣ ହଉଛି—
ଦଶହରା ଛୁଟି ପାଇଁ ଅଫିସ ଆଜି ହେଇ ସାତ ଆଠ ଦିନ
ବନ୍ଦ ରହିବ ।

କୁନ୍ତ—ଆହା-ହା-ହା । କି ନୂଆ କଥାଟାଏ ନକହିଲଟି, ଦଶହରା
ପାଇଁ ଅଫିସ୍ଛୁଟି ହୁଏ—ହଉଛି । ମୋର ସେଥିରେ କ'ଣ
ଗଲା ?

ଗୋବ—"ହୃଏ–ହଉଚ" ନୁହେଁ । ଯଦି ବାରମାସ ପରେ ତମେ ତମର ଉଦ୍ଧୃଧନର ସଞ୍ଚିତ ଅଭାବ, ଅଭିଯୋଗ ଆଉ ଅଭିମାନର କାହାଣୀ ମୋ କାନରେ ଲଗାଏଇ ଆଠଦିନ ଧରି ଶୁଣାଇବାର ସୁଯୋଗ ପୁଣି ପାଇବ ।

କୁନ୍ତଳା—ତମେ ଶୁଣିବ ?

ଗୋବ—ନଶୁଣି ଉପାୟ ଅଛି ?

କୁନ୍ତଳା—ବୁଝିଲି, ଆମ ମାଇପି ଜାତଙ୍କର ସବୁକଥା ଯଦି ତମେ ଶୁଣୁ ଥାନ୍ତନା, ତମ ପୁରୁଷମାନେ ଏତେ ବେଳକୁ ବ୍ରହ୍ମା ପାଲଟି ଯା'ନ୍ତିଣି ।

ଗୋବ—ରକ୍ଷା ହେଇଚ । ଆମକୁ ବ୍ରହ୍ମସୃଷ୍ଟି କରି ହିମାଳୟ ପଠେଇବାର ସାଧନା ତା'ହେଲେ ତମେ କରୁନ ! ତା'ପରେ ଦ୍ୱିତୀୟ କାରଣ ହେଲା, ପୂଜାଛୁଟି ପୂର୍ବରୁ ଏ ମାସର ଦରମାଟା ହାତକୁ ଆସୁଚ ।

କୁନ୍ତଳା—ଛୁଟି ପରେ ହାତଟାଯେ ଏକାବେଳକେ ଖାଲି ହେଇ ଯାଇଥିବ, ସେ କଥା ଭାବିଚ ?

ଗୋବ—ଭାବିଚ । କିନ୍ତୁ ସେପାଇଁ ଦୁଃଖ କରୁନ । ଦୁଃଖ ସୁଖର ସଂସାର ଆମର । ଏ ବର୍ଷ ପାଞ୍ଜିରେ ପୁଣି କୁଆଡ଼େ ଆମ ଦୁହିଁଙ୍କ ରାଶିରେ ଅଛି—ଆୟୁ ପାଞ୍ଚକୁ ବ୍ୟୟ ପନ୍ଦର ।

କୁନ୍ତ—ହଉ, ହେଲା । ଖୁବ୍ ଧୁମ୍ ଧାମ୍‌ରେ ଏଥର ତା'ହେଲେ ଦଶ'ହରା କରୁ !

ଗୋବ—ହିଁ, ତା'ପରେ ତମର ତୃତୀୟ କାରଣ ହେଲା—

କୁନ୍ତ—ଏଥର ଛୁଟିରେ ଭାଇ ଆମର ଏଠିକି ଆସିବେ ।

ଗୋବ—ଆରେ, ଦେଖୁଚ ! ଚିଠିଟା କାଲିଠୁ ଆସିଲଣି—ମୁଁ ଏ ପର୍ଯ୍ୟନ୍ତ ତମକୁ କହିନ । ଚିଠିଟା କ'ଣ ହେଲା ?

କୁନ୍ତ—ମୁଁ ପଢ଼ିଚ । ଦ ବର୍ଷରୁ ଉପର ହେଇଗଲା ସେ କଟକ
ଆସି ନାହାନ୍ତି ।

ଗୋବ—ନାଇଁମ, ଏତେଦିନ କୋଉଠି ହେଲ ? ସେ ପଶ୍ୱ—

କୁନ୍ତ—ତମର ତ ଅଜକା କଥା ଭାଲକ ମନେ ରହେନାହିଁ ତମେ
କଣ ଜାଣିଚ ? ଦ ବର୍ଷରୁ ବେଶୀ ହେଲଣି । ହଁ ତେମେ ଅଜ
ଯେତେ ଚଞ୍ଚଳ ପାର ଅଫିସରୁ ଆସିବ ।

ଗୋବ—ଯେତେ ଚଞ୍ଚଳ ହେଲେବ ସ୍ୱତ ଅଠଟା ଏ ପାଖରୁ
ନୁହେଁ ।

କୁନ୍ତ—ହଉ ଅଠଟା । ଅଜ ବଜାର କରିବାକୁ ହେବ । ପଅର
ଦିନ ସପ୍ତମୀ ପୂଜା ।

ଗୋବ—ବଜୁ ଅଜ ଇତକୁ ସ୍ୱଜୁ ଭା' ବସାକୁ ନେଇ ଯାଇଚ
ପସ୍ୱ ?

କୁନ୍ତ—ହଁ ।

ଗୋବ—ସେମାନେ ପୁଣି କେତେବେଳେ ଆସିପର ?

କୁନ୍ତ—କେଜାଣି—ଅଜ ଅସୁଛନ୍ତି କ କାଲ ଆସୁଛନ୍ତି ।

ଗୋବ—ଭାଙ୍କ ଜାମା ପଟା ?

କୁନ୍ତଳା—ସେ କାମ ସେ ବାକି ରଖିଛନ୍ତି ? କାଲଠୁଁ ଟୁନା ଦର୍ଜି
ଦୋକାନରେ ମାପ ଦଅ ସରଚ । କାହାର କ ଜନା କ ଭଲ
ଜାମା—ସେ ସବୁର ଭାଲକା ବ ହେଇ ଯାଇଚ । ହଁ ଭୁଇଙ୍କ
ପାଇଁ ଲୁଗା ହବଟି ?

ଗୋବ—ନହବ କେମିତ ? ଅମେ ସବୁ ଲୁଗା ପିନ୍ଧବୁ—ସେ
ପିନ୍ଧବେ ନାଇଁ ? ଧୋତ—ପଞ୍ଜାବୀ···

କୁନ୍ତ—ଆଉ କ'ଣ, ଗୃଦର ?

ଗୋବ—ନା, ନା, ଗୃଦର କ'ଣ ହେବ ?

କୁନ୍ତ— ତା' ହେଲେ ହଲେ ଜୋତା ।

ଗୋବ—ଜୋତା ?

କୁନ୍ତ—ହଁ, ନ ହେଲେ ସୁନ୍ଦର ଦଶିବନ୍ଧ ।

ଗୋବ—ଆଚ୍ଛା, ମୁଁ ଅଫିସରୁ ଫେରେ !—ସେଠି କଏ ସାଧୁ ?

ସାଧୁ—ଆଜ୍ଞା ! (ସାଧୁ ଆସିଲା)

ଗୋବ—ସାଧୁ କାହିଁ ?

ସାଧୁ—ଅଛି ଆଜ୍ଞା—ଏଇଠି ଅଛି । (ସାଧୁ ମଧ୍ଯ ଆସିଲା)

କୁନ୍ତ—ସେ ଦହିଁଙ୍କ ବଜେଟ୍ ଶୁଣିଲଣି ? ଖୁବ୍ ଲମ୍ବା ବଜେଟ୍ ।

ଗୋବ—କଣ କଉ ସାଧୁ ?

ସାଧୁ—ନାହିଁ ଆଜ୍ଞା, ମୋ' ନଜର କଲ୍ଲୁ ନାହିଁ ଯେ, ମା'ଙ୍କୁ ତ ମୁଁ ସବୁ କହୁଚି ।

କୁନ୍ତ—ମା, କଚ୍ଛୁ ଜାଣନ୍ତି ନାହିଁ । ତମେ ନଜେ କୁହ ।

ଗୋବ—କ' ଣ, ତମ ଘରକୁ ଲୁଗାପଠା ପଠେଇବ ?

ସାଧୁ—ନାହିଁ ଆଜ୍ଞା, ଏ କଡ଼କ ଦ'ଶହ୍ରା·········

ସାଧୁ—କଉ କହୁନ ଭଇନା, ଖୋଲକର କହୁନ—

କୁନ୍ତ—ତାକୁ ଲଜ ମାଡ଼ୁଚି ।

ଗୋବ —(ହସି), ଲଜ ମାଡ଼ୁଛି ? କଣ ସାଧୁ—କଥା କଣ ?

ସାଧୁ—ଭଇନାଙ୍କ ଘରୁ ତାଙ୍କ ପିଲାଏ କୁଆଡ଼େ ଦଶହ୍ରା ଦେଖି ଆସିବେ ।

ଗୋବ—ଓ, ଏଇକଥା ? ସାଧୁର ସ୍ତ୍ରୀ ତା'ହେଲେ ଆସିବ ।

ସାଧୁ—ହଁ, ଆଜ୍ଞା ! ପାଏ ନ ପାଏ ଅସି କୋଡ଼ିଏ ବର୍ଷ ସଂସାର କଲଣି—ଅଜଯାଏ କଣ୍ଟକ ଦଶଗ୍ରନ୍ଥା ଦେଖି ପାରିଲ ନାହିଁ । ହୁକୁମ ହେଲେ, ଲୋକ ଯାଉଛନ୍ତି, ଅଜ ଗାଁକୁ ଖବର ପଠେଇ ଦେବ ।

ଗୋବ—ଅଚ୍ଛା, ଅଚ୍ଛା, ହୁକୁମ ହେଲା । ତମେ ଖବର ପଠାଅ ସେ ଆସନ୍ତୁ । ହଁ, ସାଧୁ, ତୋର ପୁଣି କଏ ଆସିବେ ? ତୋ ସ୍ତ୍ରୀ ପୁଣି ଦଶର୍ ଦେଖିଛନ୍ତି ନା ନାହିଁ ?

ସାଧୁ—ଦେଖି ନାହାନ୍ତି ଯେ, ହେଲେ ସେ ଭୁଆସୁଣୀ ଲୋକ, ବୋଉ ତାକୁ ଛାଡ଼ିବ ନାହିଁ ।

କୁନ୍ତ—ସାଧୁର ଘରୁ କେହି ଆସିବେ ନାହିଁ । ଆସିବେ ତା ଗୁରୁ ଗୋସେଇଁ ।

ଗୋବ—ଗୁରୁ ଗୋସେଇଁ ? ମାନେ ବାବାଜୀ ?

ସାଧୁ—ହଁ, ଆଜ୍ଞା, ଦୁଗ ବାବାଜି—ମଠରେ ରହନ୍ତି । ଜଟା, କୌପିନ୍ ସବୁଅଛି । ଦର୍ଶ ବୃନ୍ଦାବନ କାଳୀ ମନ୍ଦିରରେ କଣ ଜପତପ କରିବେ । ଏଠି ରହିଲେ ମନ୍ଦିର ପାଖ ହବ । ଘରି ନେହୁରା ବନ୍ତ ହେଇ ମୋ ପାଖକୁ ଖବର ପଠେଇଚନ୍ତି । ହୁକୁମ ହେଲେ—

ଗୋବ—କଣ କହୁଚ କୁନ୍ତଳା ?

କୁନ୍ତ—ମୁଁ ଅଉ କଣ କହିବ ? ଅଜ ଭୋର ପାଞ୍ଚଟାରୁ ଉଠି ସେଟପେଇ ବାସ ଆରମ୍ଭ କରି ଦେଇ ଦହେଁ ଯାକ ମୋ ସାଥିରେ ଲଟଗଇଚନ୍ତି ।

ଗୋବ—ଅଉ ସେଇଥି ପାଇ ତୁମ ମନ ଏମିତ ଖୁସି, ନା ?

କୁନ୍ତ—ଆଚ୍ଛାକଥା ! ଦୁହିଁଙ୍କର ଗୃହର ରକ୍ଷିତ—ତାଙ୍କ ହାଣ୍ଡିଲଭ ବୁଝିବ ନାହିଁ ?

ଗୋବ—ହଉ ସ୍ୱଧୁ, ହୁକୁମ ହେଲ-ଯାଅ । ସାଧୁଙ୍କ ଗୃହିଣୀ ଯେତେବେଳେ ଆସୁଛନ୍ତି, ତମ ଗୁରୁଗୋସେଇଁ ନ ଆସିବେ କାହିଁକି ? ଆସନ୍ତୁ ! କନ୍ତୁ କୁନ୍ତଳା, ଇଏତ ଗୋଟାଏ ଗଙ୍ଗାସାଗର ମେଳାର ଉପକ୍ରମ ଏଠି ହେଲଣି । ଏମାନେ ସବୁ ରହିବେ କେଉଁଠି ?

କୁନ୍ତ—ସେ ପ୍ଲାନ୍ ବ ଠିକ୍ ହେଇ ସାରଛ । ଏ ମନ୍ଦିଘରେତ ଘଇ ରହିବେ । କାଠ ଘରଟା ସଫାକର ସେ ଘରେ ସାଧୁର ସ୍ତ୍ରୀ ରହିବ ।

ଗୋବ—ଆଉ ସଧୁର ଗୁରୁ ଗୋସେଇଁ ?

କୁନ୍ତ—ସେ ରହିବେ ଡିଲଙ୍କ ପଢ଼ାଘରେ ।

ଗୋବ—ବାସ୍ ! ଯୋଗୀ, ଭୋଗୀ ସମସ୍ତଙ୍କୁ ନେଇ ତା'ହେଲେ ଏଥର ଦଶେଷ୍ଟା କଟିବ । ଦରମାଟା ଯେତେବେଳେ ଛୁଟି ଆଗରୁ ମିଳୁଛ—ଖର୍ଚ୍ଚ ହବାର ବାଟଟା ମଧ୍ୟ ସାଫ୍ ହେଇଯିବା ଉଚିତ । ହଉ, ସଧୁ, ସାଇକଲ ବାହାର କର,—ଅଫିସ୍ ବେଳ ହେଇଗଲ ।

---

## ଦ୍ୱିତୀୟ ଦୃଶ୍ୟ

[କାଠଘର । ପରିଷ୍କୃତ—ବାସଉପଯୋଗୀ ହୋଇଛି ।
ଘର ଭିତରେ ଅଛୁ ସାଧୁ । ରାଧୁ ଆସିଲା । ସମୟ—ସଂଧ୍ୟା]

ରାଧୁ—ଭାଇନା, ଭାଇନା, କୁଆଡ଼େ ଗଲ ସାଧୁ ଭାଇନା ?

ସାଧୁ—ଓଃ ! କାହିଁକି ପାଟିଟା କରୁଚୁ ? ରହ ।

ରାଧୁ—କଉ, ଏତକବେଳୁ ଘର ସଫେଇରେ ଲାଗି ପଡ଼ିଲଣି ?

ସାଧୁ—ଆସିଲେତ କାଲି ଆସି ପହଞ୍ଚିଯିବେ । ମତେ ଆଉ ବେଳ କାହିଁ ? ସାନଭାଇ ଲେଖାରେ ତୋତେ ଟିକିଏ କହିଲି ଯେ—ତୁ କ'ଣ ଠରାଳୁଆ ଦଉଡୁ ?

ରାଧୁ—ପଢ଼ାଘରୁ ଚଉକି, ବେଞ୍ଚ, ମେଜ ହୋଇ ଗାଡ଼ିଏ ଜିନିଷ ଏଯାଏ ବାରଣ୍ଡାକୁ ବାହାର କଲା ବେଳକୁ ମୁଁ ହାଲ ନାଲ ହୋଇ ଗଲଣି ।

ସାଧୁ—ତୋ'କାମ ତୁ ସାରି ଦେଲ୍ଣି କି ?

ରାଧୁ—ହଁ । ହଇହୋ ଭାଇନା, ଉମେଡ଼ ଏଠି, ସେପେଷଇରେ କିଏ ?

ସାଧୁ—ମା !

ରାଧୁ—ମା' ନିଜେ ରାନ୍ଧୁଛନ୍ତି ?

ସାଧୁ—ହଁ ।

ସାଧୁ—ମା'ଙ୍କ ମନ ଭାରି ଖୁସି ।
ସାଧୁ—ତାଙ୍କ ଭାଇ ଆସିବେ—ସେ ଖୁସି ହେବେ ନାହିଁ ?
ସାଧୁ—ତମେତ ତାଙ୍କୁ ଦେଖିଥିବ ଭାଇନା ?
ସାଧୁ—ମନ୍ଦ ! ଏଇ ଦ ଅଢ଼େଇ ବର୍ଷତଳେ ଆସି ଏଠି ଦ'-
ହପ୍ତା ଧାଏ ରହିଥେଲେ ।
ସାଧୁ—ଲୋକ କେମିତିକା ?
ସାଧୁ—ଭଲ ଯେ, ହେଲେ କେମିତି ଓଲକାଥ । ବାବୁ ତାଙ୍କ
ଉପରକୁ ଭାରି ଖିଚି ଖିଚି ହଅନ୍ତି ।
ସାଧୁ—ସକାଳେ ତାଙ୍କପାଇଁ ବାବୁ, ଜାମା ଲୁଗା ବରାଦ କରୁ
ଥେଲେ—ତେମେ କହୁଚ ଖିଚ୍ ଖିଚ୍ ହଅନ୍ତି ! ତେମେ
ଜାଣିନମ ଭାଇନା—ଯେତେ ହେଲେ ନିଜ ଶଳାଟି ?
ନା' କ'ଣ କହୁଚ ? ଭାଇନା—ହୋ ଭାଇନା—
ସାଧୁ—ଏଁ !
ସାଧୁ—ଏମିତି ହାଁ କରି କାହାକୁ ଅନେଇଚ ?
ସାଧୁ—ତୁ ଗୋଳମାଳ କରନା—ରହ । ମୁଁ ନିଘା କରୁଚ ।
ସାଧୁ—ନିଘା କରୁଚ ? କାହାକୁ ?
ସାଧୁ—ଏଇ ଝିଡ଼କି ତଳେ ଥେଲା—ଗଲା କୁଆଡ଼େ ?
ସାଧୁ—କଏ କୁଆଡ଼େ ଗଲା ? କାହାକୁ ଖୋଜୁଚ ?
ସାଧୁ—ହଁ ! ଏଇ ସେ ଫାଟ ଭିତରୁ ନଶ ହଲଉଚ । ତୁ ଆ'
ଦେଖା—ଯିବୁ କୁଆଡ଼େ ?
ସାଧୁ—ତେମେ କ'ଣ ପାଗଳ ହେଇ ଗଲଣି କି ଭାଇନା—କାହା
ସାଙ୍ଗରେ କଥା କହୁଚ ?
ସାଧୁ—ରହ, ଏଥର ବାହାରିଲା—ବାହାରିଲା—ହଁ ! ଏଥର
କୁଆଡ଼େ ଯିବୁ ? (ଗୋଟାଏ ଅସରପାକୁ ଧରିଲା)

ସାଧୁ—କର୍ତ୍ତ—କର୍ତ୍ତ—ଭଇନା ! ତେମେ ଏ ଅସରପା ଧରୁଚ କାହିଁକ ? ଇଏ କଣ ? ଏ ଗାମୁଛା କାନରେ କାନଏ ଅସରପା ବାନ୍ଧିଲଣି ? ଏ ଗୁଣ୍ଡାକ ମରିଯିବେ !

ସାଧୁ—ଓଃ, ପାଟି କରନା—ମା ଶୁଣିବେ ।

ସାଧୁ—ତେମେ ଏ ଗୁଣ୍ଡାଙ୍କୁ ଧରୁଚ କାଇଁକ ?

ସାଧୁ—କଣ କହୁଥରେ ସାଧୁ, ତାଙ୍କର ଭାରି ଲର । ଆରେ ତୋ ନୂଆବୌଙ୍କର ବା··· । ବୋକାଟା କରେ ! ବୁଝି ପାରୁନୁ ? ଅରେ ମୁଁ ଅମର ତାଙ୍କ କଥା କହୁଚ ।

ସାଧୁ—ଓ, ହଁ ହଁ ! ଉମର ତାଙ୍କ କଥା ! ମୋ ନୂଆବୌ ! ବୁଝିଲି ।

ସାଧୁ—ତାଙ୍କର କଥା କହୁଚ—ତାଙ୍କର ଭାରି ଡର । ରାଧ ଭାଲୁକୁ ଖାତର ନାହିଁ—ହେଲେ ଅସରପା ଗୋଟାଏ ଦେଖିଲେ ଛାନିଆରେ ହାଲେଲ ଖାଇ ଚେତା ବୁଡ଼ିଯିବ ।

ସାଧୁ—କ'ଣ କହୁଚ ?

ସାଧୁ—କାଲି ସେ ଆସି ଏଇଠି ରହିବେ ! ଆଉ ତୁ ଦେଖ୍ ! ଏ ଫଉଜଙ୍କୁ ଦେଖିଲେ ସେ ଆଉ ପ୍ରାଣ ଧେନ ଫେରିବେଟି ? ଅଜ ସାତସାର ଏଇଠି କରି ବସି ଗୋଟି ଗୋଟି ସମସ୍ତଙ୍କୁ ନେଇ କାଠଯୋଡ଼ି ନଈରେ ଭସେଇ ଦେଇ ଆସିବ ।

କୁନ୍ତ—(ଦୂରରୁ) ସାଧୁ, ସାଧୁ ! (କୁନ୍ତଳା ଆସିଲେ । ସାଧୁ ଭିତରକୁ ଲୁଚିଗଲା)

କୁନ୍ତ—ହଇରେ ସାଧୁ, ବାବୁ ଆସିଲେଣି ?

ସାଧୁ—ନାହିଁ ମା—ଆସି ନାହାନ୍ତି ।

କୁନ୍ତ—ଘଢ ଆସି ଆଠଟାରୁ ଉପର ହେଲଣି-ଏତେବେଳଯାଏ ଆସିଲେ ନାହିଁ ! ବଜାର କରିବେ କେତେବେଳେ ? ସାଧୁ କଣ ଘର ସଫା କରୁଚ ?

ସାଧୁ—ହଁ, ଡାକଦେବ ?

କୁନ୍ତ—ନାଁ, ଥାଉ । ଖୁସିରେ ଅଛ ତା' ମନ ଆଜ କୋଉଥିରେ ଲଗୁନାହିଁ । ତା ଭାଇରଜା ପାଇଁତ ଖଣ୍ଡେ ଶାଢ଼ୀ ହବ । ଆଉ ତୋ ଗୁରୁଗୋସେଇଁ ?

ସାଧୁ—ସିଏତ ବାବାଙ୍କ ଲୋକ । ଆପଣ ମନ କରିବେ ତ, ଖଣ୍ଡେ ଅଲ୍ ଖାଲ୍......

କୁନ୍ତ—(ହସି ହସି) ହଁ ସାଧୁ, ଦରମା ଯେତେବେଳେ ଅଗତ୍ରୁସ୍ତ ମିଳୁଚ ଅଲଖାଲ ନହବ କାହିଁକ ? ହଉ ତୁ ଯା—ତେଣେ ଜାଗା କର । ସେ ଅଫିସ୍‌ରୁ ଫେରିଲ କ୍ଷଣି କଲଖିଆ ଖାଇ ବଜାରକୁ ଯିବେ ।

ସାଧୁ—ଯାଉଚ ମା—ହେଲେ ବାବୁଙ୍କୁ ଅଲଖାଲ କଥା ଆପଣ କହିବେ । (ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

[ଗୋବର୍ଦ୍ଧନ ବାବୁଙ୍କ ସୂବର କୋଠରୀ । ଆଲୁଅ ନ ଜାଳି ଗୋବର୍ଦ୍ଧନ ବାବୁ ଚୌକି ଉପରେ ବସିଛନ୍ତି । ସମୟ—ରାତ୍ର ପ୍ରାୟ ସାଢ଼େ ଆଠଟା । ରାଧୁ ଆସିଲା ।]

ଗୋବ—(ଗମ୍ଭୀର ଗଳାରେ) କିଏ ?

ରାଧୁ—(ଚମକି ଉଠି) ଏଁ ?

ଗୋବ—କିଏ ରାଧୁ ?

ରାଧୁ—ଆଜ୍ଞା !

ଗୋବ—କଣ ?

ରାଧୁ—ନାଇଁ ଅଜ୍ଞା, ମା କହିଲେ ଆପଣଙ୍କ ପାଇଁ ଜାଗା କରିବାକୁ ।

ଗୋବ—ମା'ଙ୍କୁ ଡାକଦେ ।

ରାଧୁ—ଆପଣ ଏ ଅନ୍ଧାରଟାରେ···?

ଗୋବ—ଥାଉ, ଆଲୁଅ ଜାଳିବା ଦରକାର ନାହିଁ—ତାଙ୍କୁ ଡାକଦେ । [ରାଧୁ ଚାଲିଗଲା । ଟିକିଏ ପରେ କୁନ୍ତଳା ଓ ରାଧୁ ଆସିଲେ]

କୁନ୍ତ—ଏଁ ! ଇଏ କଣ ? ଏମିତି ଅନ୍ଧାରରେ ଚୁପ୍‌ଚାପ୍ ବସିଚ କାହିଁକି ? କଣ ହେଉଚି ? (ଆଲୁଅ ଜାଳିଲେ)

ଗୋବ—କିଛି ନାହିଁ । ଓଃ, ଆଲୁଅଟା କାହିଁକି ଜାଳିଲ ? ଏ ଅନ୍ଧାରରେ ଭୂତହୋଇ ବସି ୨ ସବୁ ଦେଖୁଥିଲି ।

କୁନ୍ତ—କଣ ଦେଖୁଥିଲ ?

ଗୋବ—ସାଧୁ ସେ ପାଖରେ ଘର ସଫା କରୁଚ—ସାଧୁ କେମିତ ତମ ପାଖରେ ଅଲ୍‌ଗାଳ ବିବାଦ କରୁଚ ।

କୁନ୍ତ—ଅଫିସରୁ ଫେରି କାହାରିକୁ ଡକା ନାହିଁ, ହକାନାହିଁ ଏଠି ବସି ଗୋଟାଏ ନବରଙ୍ଗ ଲଟିଛ । ତୁ ଜାଗା କର ସାଧୁ, ମୁଁ କଲଖିଆ ଅଟେଣ ।

ଗୋବ—ସକାଳେ ଓ ଭୁରି ଭୋଜନ ମିଳିଥିଲା; ଏ ବେଳାର ସୂଚନା ଏବେଠୁଁ ମିଳିଲାଣି ।

କୁନ୍ତ—କ'ଣ ହେଉଚି ତମର ?

ଗୋବ—ଶୁଣିବ କଣ ହେଉଚି ?

କୁନ୍ତ—କଣ ?

ଗୋବ—ବସ କହୁଛି ।

---

# ଚତୁର୍ଥ ଦୃଶ୍ୟ

[କାଠଘର, ସାଧୁ ପୂର୍ବପର ଅସରପା
ଧରୁଛ । ଗ୍ୱଧୁ ଆସିଲ]

ଗ୍ୱଧୁ—ଅସରପା ଧର୍‌ ସରିଲ ଭାଇନା ?

ସାଧୁ—ଆଜ୍ ଉନାଟା ଏପାଖ ସେପାଖ ନଡ଼ବଡ଼ ହଜ୍‌ଚନ୍ତି—ଧର୍‌ ଦଜ୍ ନାହାନ୍ତି ।

ଗ୍ୱଧୁ—କେତେବେଳ ଯାଏ ଏମିତ ଛଅାଣ ଛକ ବସିଲ ପର ବସିଥବ ?

ସାଧୁ—ଯେତେବେଳ ହଜ୍ ! କଣ ଆଜ୍ ଛାଡ଼ିବ ? ଅଜ ସଞ୍ଜବେଳେ ଖବର ପାଇ ଯଦ ଗ୍ୱତ ଗାଡ଼ରେ ବାହାର ପଡ଼ବେତ କାଲ ସକାଳୁ ଅସି ଏଠି ହାଜର ।

ଗ୍ୱଧୁ—ହଜ୍, ଗ୍ୱତ ପାହ୍ମ ପଛେ—କାଲ ସକାଳକୁ ଆଜ୍ ଏ ଅଡ଼ୁଆ ରଖ ନାହିଁ । ଯୋଉ୍ ପଲକ ଧର୍‌ଥେଲ, କଣ କଲ ?

ସାଧୁ—ଏଇ—ନେ । ହୁସିଆରରେ ଧର । ଏଇ ସେ ଥାକ ଉପରେ ଗୋଟାଏ କଣ ହଲେଇଲଣି । ଆ ବେଟା—ଆ—ଆ—

ଗ୍ୱଧୁ—ଯା' ବେଟା—ଯା—ଯା—ଫୁର୍ ର ଯା—(ସବୁଯାକ ଛାଡ଼ିଦେଲ)

ସାଧୁ—(ଗ୍ୱଗିଯାଇ) ଗ୍ୱଧୁ !

ଗ୍ୱଧୁ—କଣ ଭାଇନା ?

ସାଧୁ—ଏ କଣ କଲୁ ତୁ ? ସବୁ ଗୁମର ଗାଉଡ଼ଦେଲୁ ?
ରାଧୁ—କଣ ଆଉ କରିଥାନ୍ତି ?
ସାଧୁ—ତୋ ଭଣ୍ଡି କଣାକର ମୁଁ ରକ୍ତ ପିଇଯିବି ।
ରାଧୁ—ମିଛଟାରେ ଭଲ କାହିଁକି ମୋ ଉପରେ ରାଗୁଚ କହିଲ ?
ସାଧୁ—ତୁ ଚଣ୍ଡାଳ କଣ କଲୁରେ ? କେତେ ଛକ୍‌ଲପି ଉଠେଇ ମୁଁ ଏ ଗୁମର ଧରିଥିଲି—ଆଉକଣ ପାରିବି ? ଏ ଘରେ ସେ ଅସି କାଲି ରହିବ କେମିତି ?
ରାଧୁ—ମୋ କଥା ଶୁଣ ଭାଇନା—
ସାଧୁ—କଣ ଆଉ ଶୁଣିବି ?
ରାଧୁ—ଶୁଣିବ ଏଇଆ ଯେ—ବାପପୁଅ ଦୁହେଁ ରାତି ଅନ୍ଧାରୀ, ମୁଗୁରି ପଛ ମେଳା ।
ସାଧୁ—ତୋ ଦାନ୍ତ ଭାଙ୍ଗିଦେବି ରାଧୁ । ନିଜ ହାତରେ ନିଜେ ମୁଗୁରି ପଛ ମେଳା କରି ମୋ ଆଗରେ ପୁଣି ମୁହ ହଲେଇ ଡଗ ମେଲୁଚୁ ?
ରାଧୁ—ଏ ମୁଗୁରି ନୁହେଁ ଭାଇନା—ତେଣେ ବଡ଼ ମୁଗୁରି ମେଳା ।
ସାଧୁ—କଣ ?
ରାଧୁ—ଆସ, ଶୁଣିବ ଆସ ।

---

# ପଞ୍ଚମ ଦୃଶ୍ୟ

[ ଗୋବର୍ଦ୍ଧନବାବୁଙ୍କ ପୂର୍ବର କୋଠରୀ । ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଆଲୋଚନା ଚାଲିଛି ]

କୁନ୍ତ—ସେଇ ଅତି ଅସମ୍ଭବ କଥା ତମେ କହୁଚ । ଏ ବର୍ଷ ଦଶହରା ଛୁଟି ଆଗରୁ ପୁଣି ଦରମା ନ ପାଉଚ କଏ ?

ଗୋବ—ତୁମେ ତା ହେଲେ କହୁଚ ମୁଁ ଦରମା ପାଇ ବାଟରେ ଜୁଆ ଖେଳି ଏଠି ଆସି ଅନ୍ଧାରରେ ତୁନିହୋଇ ବସିଥିଲି ।

କୁନ୍ତ—କେଜାଣି ? ଇଏତ ଜୁଆ ଖେଳରୁ ବଳିଲାଣି । କାଲି ଅଫିସରୁ ଫେରି କହୁଥିଲ—ଦରମା ମିଳୁଚି । ଆଜି କହୁଚ—ମିଳିଲା ନାହିଁ !

ଗୋଇ—କାଲି ଯା କହୁଥିଲି ଠିକ୍ । ଆଜି ଯା କହୁଚି ଠିକ୍ । ମୋଟ ଉପରେ ଦରମା କଥା ଏକା ବେଳକେ ଭୁଲିଯାଇ ବର୍ତ୍ତମାନ କଣ କରାଯିବ କୁହ ?

କୁନ୍ତ—ମୁଁ କଣ କହିବି ?

ଗୋବ—ଡମଛଡ଼ା ଆଉ ଗତି ନାହିଁ ।

କୁନ୍ତ—ଗତି ଥାଉ ନଥାଉ ମୋ ପାଖରେ ଟଙ୍କା ନାହିଁ ।

ଗୋବ—ଏମିତି ଅବସ୍ଥାରେ ସବୁଦିନେ ତମ ମୁହଁରୁ ପ୍ରଥମେ ଏ ନାହିଁଟା ଭରି ଜୋରରେ ଅବଶ୍ୟ ଶୁଣାଯାଇଥାଏ । କନ୍ତୁ—

କୁନ୍ତ—ତମେ କଣ ସ୍ୱପ୍ନ ଦେଖୁଚକ ? ଏଇ ଆଠଦନ ତଳେ ପଶ୍ଚ ତନଶ ଟଙ୍କା ବନ୍ଧୁ ଅଯା ନେଇଗଲ ।

ଗୋବ—ବନ୍ଧୁ ଅଯା ତମ ଭ'ଣୀ—ତମେ ତାଙ୍କୁ ଦେଲ—

କୁନ୍ତ—ସେ ତମଠୁ ଦାନ ନେଇନ । ଅଭ୍ରବ ଅସୁବଧାରେ ପଡ଼ଥିଲ । ହାତ ଉଧାର ନେଇଚ ।

ଗୋବ—ଠିକ୍ ସେମିତ ଅଭ୍ରନ୍ତ ଅସୁବଧାରେ ମୁଁ ପଡ଼ଚ ।

କୁନ୍ତ—ମୁଁ ଆଉ ପଡ଼ ନାହିଁ, ନା ? ଘରେଇ ସମ୍ବନ୍ଧେ ଅସ୍ୱଚନ୍ତ !

ବଜୁ—ଇତଙ୍କ ମନ ଲକ୍ଷି କାମାଗଛା ନ ହେଲେ ସେ ଘରେ ଭଉଣୀ ଜୀବନ ଝୁଣି ଖାଇ ଯିବେ । ଏଣେ ସାଧୁ ସାଧୁ ଡ଼... କାହିଁଗଲେ ସେ ଦ'ଟା...( ଡାକଲେ ) ସାଧୁ—ସାଧୁ...

ସାଧୁ—(କୁଣ୍ଠିତ ଭାବରେ) କଅଣ...ମା ?

କୁନ୍ତ—ସାଧୁ—କାହିଁଗଲ...ସାଧୁ ?

ସାଧୁ—(ସାଧୁ ପର) ଆଜ୍ଞା— (ସାଧୁ ଓ ସାଧୁ ଆସିଲେ)

କୁନ୍ତ—ଦେଖୁଚ ! ତମେ ଦରମା ପାଇନ ଶୁଣି ସେ ଦହେଁ କେମିତ ଏଇ ମୁଣ୍ଡରୁ ଥଙ୍ଗେଇଲେଣି—କାଲକ ଜମା ବଛଣାରୁ ଉଠିବେ ନାହିଁ ।

ଗୋବ—ଧୂମ୍—ଧାମ୍ ପରବର୍ତ୍ତିରେ ଏମିତ ଶୋଇ ବସି ତା'ହେଲେ ଦଶଗଛା କଟିବ ।

କୁନ୍ତ—ସେ ସବୁ ବାକ୍‌ଚାତୁରୀ ଥାଉ—କାଲ ଡାକଘରୁ ଟଙ୍କା ଉଠାଅ । ଦରମା ପାଇଲେ ପୁଣି ରଖି ଦବ ।

ଗୋବ—ଏଇଥର କୁନ୍ତଳା ତମେ ସ୍ୱପ୍ନ ଦେଖିଲ । କାଲପରା ରବବାର !

କୁନ୍ତ—ସତେତ !

ବଜୁ—(ଦୂରରୁ) ବୋଉ, ବୋଉ,

କୁନ୍ତ—ହେଇତ, ଇତ ଆଉ ବଜ୍ରୁ ଆଇଲେଣି । କରେ, ଏତେବେଳେ କମିତ ଆସିଲ ?

ଇତ—ଶାମ ଭାଇ ପର୍ ଆମକୁ ଘର ଦୁଆର ମୁହଁରେ ଛାଡ଼ ଦେଇ ଗଲେ ।

କୁନ୍ତ—ଶାମ କାଇଁଗଲ ?

ବଜ୍ରୁ—ତାଙ୍କର କ ଣ କାମ ଅଛୁ ବୋଲ୍ ସେ ଚାଲଗଲେ ।

କୁନ୍ତ—ଚାଲ, ଖାଇବ ।

ଇତ—ନା, ଆମେ ତାଙ୍କ ଘରେ ଖାଇ କର ଆସିଚୁ ।

କୁନ୍ତ—ଶୋଇବ ଚାଲ ।

ବଜ୍ରୁ—ଶୋଇବୁ ? ଆମଜାମା ?... ଅଜ ରାତରେ ପର୍ କନା କଣା ହେବ ?

ଇତ—ହଁ ବୋଉ, ଆମେ ପର୍ ଏଇଥିପାଇଁ ତାଙ୍କ ଘରେ ନରହ ଚାଲ ଆସିଲୁ ? ବଜ୍ରୁ, ତୁ ଯା ଶୋଇ ପଡ଼ ଜୋ, କନା ମୁଁ ପସନ୍ଦ କର ଆଣିବ ।

ବଜ୍ରୁ—ନା, ନା, ନା ମୁଁ ଯିବ । ବାପାଙ୍କ ସାଥିରେ ମୁଁ ବଜାରକୁ ଯିବ ।

କୁନ୍ତ—ଶୁଣୁଚ କି ?

ଗୋବ—ନ ଶୁଣିବାର ତ କାରଣ ଏଠି କଛୁ ନାହିଁ ।

କୁନ୍ତ—ଅରେ, ଇତ, ବଜ୍ରୁ—ଦଶରାକୁ ତମର ଜାମାପଟା କଛୁ ହବ ନାହିଁ ।

ଇତ—
ବଜ୍ରୁ—
{ ହବ ନାଇଁ !!

କନୁ—ନା, ବାପା ଦରମା ପାଇଲେ ନାହିଁ ।

ବଜ୍ରୁ—ମିଛ କଥା— ମିଛ କଥା— ଆମେ ଦେଖି ଆସିଲୁ ।ଶାମ—
ଖାଇ ଦରମା ପାଇଚନ୍ତି ।

ଇତି—ହଁ, ତାଙ୍କ ମଉସା···ମାମୁଁ ସମସ୍ତେ ଦରମା ପାଇଚନ୍ତି ।
ତୁ ଆମକୁ ମିଛ କହୁଛୁ ବୋଉ ।

ଗୋବ—ମିଛ ନୁହେଁ ଲେ ଇତି ! ଅମ ଅଫିସ୍‌ରେ ଆମେ ଅଳ୍ପ କେହି ଦରମା ପାଇନୁ । ତମେ ନୁହେଁ ଛଅ—ଦଶଖ ପରେ ମୁଁ ତମପାଇଁ ଫାଷ୍ଟ କ୍ଲାସ ଜାମା—

ବଜ୍ରୁ—ନା, ନା, ନା ମୋଟେ ନୁହେଁ—ମୁଁ କିଛି ଶୁଣିବି ନାହିଁ । ଦଶଖକୁ ଜାମା ନ ହେଲେ ଆମର ଜମା ଦର୍କାର ନାହିଁ । (ଇତି କାନ୍ଦିବାକୁ ଆରମ୍ଭ କଲଣି)

କୁନ୍ତ—ଇତି କାନ୍ଦୁଚୁ କାହିଁକି ? ଇତି—ଶୁଣ ଇତି !

ଗୋବ—ବଜ୍ରୁ—ଇତି, ଶୋଇବ ଯାଅ···ତମ କଥା କାଲି ବୁଝାଇବ ।

ବଜ୍ରୁ—ତେମେ ଆମକୁ ଠକ ଦବ !

ଗୋବ—ନା, ଠକିବ ନାହିଁ—ଯାଅ ।

ଇତି—ଆରେ ବଜ୍ରୁ, ଅ ।

କୁନ୍ତ—ଦେଖିଲଚ ? ଇତି କେମିତି ଅଭିମାନରେ ମୁହଁ ଫୁଲେଇ ଗଲା ।

ଗୋବ—ତା'ହେଲେ କ'ଣ କରିବା କୁହ ? ତମ ପାଖରେ ଜମା ଟଙ୍କା ନାହିଁ······

କୁନ୍ତ—ଘର କର ଏମିତି କ'ଣ କିଏ ପାଞ୍ଚ ପଚିଶ ରଖି ନ ଥାଏ ?

ଗୋବ—ରଖିଥାଏ କାହିଁକି ? ଏମିତିକା ଦରକାର ବେଳେ ଚୋରାଇ ନବାକୁ ତ ?

କୁନ୍ତ—ଇତର ହାରଟଙ୍କା ଅଛୁ । ମୁଣ୍ଡ ଫେଟି ଦେଇଥିଲେ ବାହାର ହର ନ ଥା'ନ୍ତୁ । ଖାଲି……

ଗୋବ—ଭାଇ ଅସୁଚନ୍ତ ବୋଲୁଛ ?

କୁନ୍ତ—ହଁ, ଏଡ଼େବଡ଼ ଦଶହରା ପର୍ବରେ ଆମେ ଏମିତ ଅବେଢ଼ ହୋଇ ଚଳୁଚୁ ଦେଖିଲେ ଆମ ଅପେକ୍ଷା ସେ ବେଶୀ ଅପଦସ୍ଥ ହେବେ । ଖାସ୍ ଏଇଥି ପାଇଁ ମୁଁ ଟଙ୍କା ଦଜଚ । ତେବେ ଟିଅଳ ଜଲଖିଆ କରି, ବଜାରକୁ ଯାଅ ।

ଗୋବ—ତମେ ଯିବ ନାହିଁ ?

କୁନ୍ତ—ମୁଁ ଆଉ ଯାଉଚ କୋଉଟି ? ସୁଧୁକୁ ସାଥିରେ ନେଇ ତମେ ଯାଅ ।

ଗୋବ—ସୁଧୁ !

ସୁଧୁ—(ପୂର୍ବପର) ଆଜ୍ଞା…

ଗୋବ—ଗଳାର ସ୍ୱର ଆଉ ଭଙ୍ଗୁଚୁ କାହିଁକି ? ବଜାର ଯିବା ନାହିଁ ?

ସୁଧୁ—କ'ଣ ଆଜ୍ଞା ବଜାର ଯିବା ?

ଗୋବ—ପୂଝାରୀଙ୍କୁ କହ, ପୁଡ଼ିଁ ଜଳଖିଆ ଦଉ । ଆଉ ତୁ ଚାଲ ମୋ ସାଥିରେ ବଜାରକୁ ଯିବୁ ।

ସୁଧୁ—ଚାଲନ୍ତୁ ଅଜ୍ଞା ! ଭାଇନା, ବାବୁଙ୍କ ପାଇଁ ଜଳଖିଆ ଅଣ, ପୁଡ଼ିଁ ।

## ଶେଷ ଦୃଶ୍ୟ

[ ଗୋବର୍ଦ୍ଧନଙ୍କ ପୂର୍ବର କୋଠରୀ । ପୂର୍ବ ଦୃଶ୍ୟର ପରବର୍ତ୍ତୀ ଦିନର ଘଟଣା । ଗୋବର୍ଦ୍ଧନ ବାବୁ ବାହାରକୁ ଯିବା ପାଇଁ ପ୍ରସ୍ତୁତ ହେଉ ଥାଆନ୍ତି । କୁନ୍ତଳା ଆସିଲେ । ସମୟ—ଅପରାହ୍ଣ । ]

ଗୋବ—କୁନ୍ତଳା, ମୁଁ ଟିକିଏ ବାହାରକୁ ଯାଉଚି ।

କୁନ୍ତ—କାହିଁକି ?

ଗୋବ—ବୁଲିଯିବାପାଇଁ ଗୋଟାଏ ଗାଡ଼ି ଠିକ୍ କରିବାକୁ ହେବ । ବିଜୁ, ଇନ୍ଦୁ ଦୁହେଁ କୁଆଡ଼େ ଗଲେ ?

କୁନ୍ତ—ଦେବୀ ମେଳରେ ଅଛନ୍ତି ।

ଗୋବ—ସାଧୁ ସେ ଘରେ କ'ଣ କରୁଛି ?

କୁନ୍ତ—କ'ଣ ଆଉ କରିବ ? ସେଇ ଗୋଟିଏ କାମ—ଅସରପି ଧରୁଚି ।

ଗୋବ—ଅଦ୍ଭୁତ କଥା ! ତାକୁ ଡାକବଟି—

କୁନ୍ତ—ଏ ଗୃହଦାନ ତା' ଆଶା ଛାଡ଼ିଦିଅ । ଯିଏଣେ ହେଲେ କରିଛଡ଼ା ଦରକାର ।

ଗୋବ—ଶାଢ଼ୀ ଖଣ୍ଡିକ ତା' ଘରଣୀଙ୍କ ମନକୁ ପାଇଚି ତ ?

କୁନ୍ତ—ପାଇଚି ବୋଲି ପାଇଚି ? ମେଇ ସକାଳ ଦଶଟା ବେଳୁ ପିନ୍ଧିଚି ଯେ ଆସି ପାଞ୍ଚ ବାଜିଲଣି—ବଦଳିବାର ନାଁ ଧରୁ ନାହିଁ ।

ଗୋବ—ଆଜ୍ ରାଧୁ ତ ଏଣେ ଗୁରୁ ଗୋସେଇଁଙ୍କ ସେବାରେ ଲାଗିଛି !

କୁନ୍ତ—ଏ ଦଶରା ଚୁରଦିନ ସେ ଦୁହିଁଙ୍କର ଛୁଟି ବୋଲି ଜାଣ ।

ଗୋବ—ହଉ ଏବେ ଛୁଟି । ଘର ରାଜ୍ ବିଦେଶରେ ଅଛନ୍ତି—ଦିନ କେଇଟା ମନ ଖୁସିରେ କଟାନ୍ତୁ । ହଁ, ମୁ ଯାଉଛି—ଯଦି ହେବ, ସିଆଡ଼େ ଷ୍ଟେସନ ଚାଲିଯିବି ।

କୁନ୍ତ—ରାଇଙ୍କୁ ଆଣିବାକୁ ?

ଗୋବ—ତାଙ୍କୁ ଆଣିବାକୁ ଯିବା କିଛି ଦରକାର ନାହିଁ ଯେ। ଛଥାପି—

କୁନ୍ତ—ରାଇ ତ ଡାଲଟେର ଗାଡ଼ିରେ ଆସିବେ ।

ଗୋବ—ହଁ,...ଡାଲଟେର ଗାଡ଼...ଏଁ !! କଣ କହିଲ ? ଡାଲଟେର ଗାଡ଼ ?

କୁନ୍ତ—ହଁ, ଡାଲଟେର ଗାଡ଼ିରେ ଆସିବେ ।

ଗୋବ—ଦଶରାର ହସ ଖୁସି ଆନନ୍ଦ ଭିତରେ ତମ ମଥା ଗୋଳ-ମାଳ ହେଇଗଲାଣି କୁନ୍ତଳା । ସେ ଡାଲଟେର ଗାଡ଼ିରେ କୁଆଡ଼ୁ ଆସିବେ ?

କୁନ୍ତ—ଆଜ୍ କୋଉ ଗାଡ଼ିରେ ଆସିବେ ?

ଗୋବ—କ'ଣ ଟ୍ରେନ୍ ଲାଇନ୍ ନୂଆ ଖୋଲିଲା ଭଳି କଥା କହୁଚ ? ସେ ଆସାନ୍‌ସୋଲ୍‌ରେ ଆସିବେ ।

କୁନ୍ତ--ଆସାନ୍‌ସୋଲ୍ ? ଆସାନ୍‌ସୋଲ୍ ଗାଡ଼ି କୋଉଠୁ ଛାଡ଼େକି ?

ଗୋବ—ସିଧା ଆସନସୋଲରୁ ।

କୁନ୍ତ—ଓଃ, କ'ଣ ଜାଢ଼ୀ ହୁଣ୍ଡି ଭଳିଆ ମଟେଇ ଏମିତ କହୁଚ ମ !
ଭାଇ ଅସନ୍‌ସୋଲ୍‌ରେ କେମିତ ଆସିବେ ?

ଗୋବ—ଆଜ ଡାଲଚେରରେ କେମିତ ଆସିବେ ?

କୁନ୍ତ—କାହିଁକ ? ଆମ ଘରଟା କ'ଣ ଡାଲଚେର୍ ଲାଇନରୁ ଉଠି ଗଲଣି ନା କଣ ?

ଗୋବ—ତମ ଘର ! ତମ ଘର ସହିତ ତାଙ୍କ ଆସିବାର ସମ୍ପର୍କ କ'ଣ ?

କୁନ୍ତ—କାହିଁକ ? ସେ କୋଉଠୁ ଆସିବେ କ ?

ଗୋବ—ସିଧା ଖଡ଼ଗପୁର—ତାଙ୍କ ଶ୍ବଶୁର ଜାଗାରୁ ।

କୁନ୍ତ—ଶ୍ବଶୁର ! ଖଡ଼ଗପୁର !! ତମେ କାହାକଥା କହୁଚ ?

ଗୋବ—କାହା କଥା ଆଉ କହିବ ? ଭାଇଙ୍କ କଥା—ମୋ ବଡ଼ଭାଇ—ଜନାର୍ଦ୍ଦନ ପଟ୍ଟନାୟକଙ୍କ କଥା !

କୁନ୍ତ—ମୁଁ ଯିବ କୁଆଡ଼େ କେ ମା ? ତମର ଭାଇ ଏବେ ଆସୁଛନ୍ତି !

ଗୋବ—ଆଉ କ'ଣ ତମଭାଇ ଆସନ୍ତେ ।

କୁନ୍ତ—ହଁ ତ, ସେ ଆସୁଛନ୍ତି । ଆଜ ଡାଲଚେରରେ ଆସିବେ—ଚିଠିରେ ସେଇଆ ଲେଖିଛନ୍ତି ।

ଗୋବ—ଚିଠି ? କ ଚିଠି—କଏ ଦେଇଛି ?

କୁନ୍ତ—ଭାଇ ଦେଇଚନ୍ତି ।

ଗୋବ—କୋଉଦନ ଚିଠି ପାଇଲ ?

କୁନ୍ତ—ପଅରଦନ—ଉପରବେଳା ଡାକରେ । ସେ ଚିଠି କଥା ସିନା ତମେ ମତେ କହୁଥିଲ ?

ଗୋବ—ମୁଁ ସେ ଚିଠିକଥା କହୁନଥିଲି—ସେଇଦିନ ସକାଳ ଡାକରେ ଭାଇଙ୍କ ପାଖରୁ ଆସିଥିବା ଚିଠି କଥା ମୁଁ କହୁଥିଲି। ସେ ଚିଠି ତା' ହେଲେ ତମେ ପଢ଼ିନ ? ପଢ଼ିଚ ତମ ଭାଇଙ୍କ ଚିଠି ?

କୁନ୍ତ—ହଁ !! ଆଉ ତେମେ ତା' ହେଲେ ଏ ଚିଠିଟା ପଢ଼ିନ ?

ଗୋବ—ନା।

କୁନ୍ତ—ମୁଁ ଯେ ପଅର ଦିନଠୁଁ ଭାଇ ଆସିବେ, ଭାଇ ଆସିବେ ବୋଲି କହୁ ହଉଚ—କାଇଁ, ତମେ ତ ସେଥିରେ କିଛି କହୁନ ?

ଗୋବ—କାହିଁକି ? ତମେ ଏ ଘରକୁ ବୋହୂ ହେଇ ଆସିଲ ଦିନଠୁଁ ମୋ' ଭାଇଙ୍କୁ "ଭାଇ" ଛଡ଼ା ତ ଆଉ କିଛି ନାଁରେ ଡାକ ନାହିଁ—ମୁଁ ଆଉ କହନ୍ତି କ'ଣ ?

କୁନ୍ତ—ହୁଁ ! ତମର ଭାଇ ଆସିବେ ବୋଲି ତା' ହେଲେ ସୁନା ପିଳଟି ପରି ଝିଁ ଚୁଁ ନକରି ଏମିତ ଦାମିକା ଜାମାକୋଟା ତମେ କିଣି ଆଣିଲ ?

ଗୋବ—କିଣା ହେଲା କେବଳ ତମରି ପାଇଁ। ତମର ଭାଇ ଆସିବେ ବୋଲିତ ତମେ ସୁନାଝିଅଟି ପରି ବାକ୍ସ ଖୋଲି ଦୁଇଶ ଟଙ୍କା ବାହାର କରିଦେଲ।

କୁନ୍ତ—ହଉ, ଭଲକଥା। ତମ ଘରକୁତ ସେ କୁଣିଆ ହେଇ ଆସୁଚନ୍ତି—କୋଉଘରେ ସେ ରହିବେ ?

ଗୋବ—କୋଉଘରେ ଆଉ ରହିବେ ! ମଝିଘରଟାତ ଭାଇଙ୍କ ପାଇଁ ରିଜାର୍ଭଡ଼୍। ତମ ଭାଇ ଯଦି ଆସିବେ—

କୁନ୍ତ—ଯଦି ଆସିବେ ମାନେ ? ତମେ କ'ଣ ଗୃହଁ ଯେ ସେ ନଆସନ୍ତୁ ?

ଗୋବ—ସେ ମୋର ଶତ୍ରୁ ନୁହନ୍ତି କୁନ୍ତଳା—ପରମ ବନ୍ଧୁ ।
ସେ ଆସନ୍ତୁ । ଆଜ ଭୋଜିଠି ସୁବିଧା ନ ହେଲେ, ସେ
ଏଇ ପିଲାଙ୍କ ପଢ଼ାଘରେ ସାଧୁବାବାଙ୍କ ସାଥିରେ—

କୁନ୍ତ—ସତେ ! ଦଶରା ମଉଜ ବୋଲି ତମ ପୂଜାଘର ଗୃହଙ୍କ
ପାଇଁ ଘର ଖଞ୍ଜା ହେଲା—ଆଉ ମୋ ଭାଇ ଆସିଲେ ଏଠି
ସେଠି ମୁଣ୍ଡ ଗୁଞ୍ଜିବେ ! ଭଲ କଥା । ତମକୁ ଯଦି ସୁନ୍ଦର
ଦିଶୁଚି, ତମେ ସେଇଆ କର । ହେଲେ ମୁଁ ଏଠି ରହିବି
ନାହିଁ—ଶାମ ବସାକୁ ଚାଲିଯିବି । (ଡାକଲେ) ରାଧୁ, ରାଧୁ—

ରାଧୁ—(ବ୍ୟସ୍ତ ହୋଇ ଆସିଲା) ଆଜ୍ଞା !

କୁନ୍ତ—ତୁ ଗଲୁ ରାଧୁ...

ରାଧୁ—(ବାଧାଦେଇ) ଟିକଏ ରହନ୍ତୁ ମା' ବାବାଙ୍କର ପ୍ରସାଦଟା
ସଜାଡ଼ି ଦେଇ ମୁଁ ଆସୁଚି । (ଚାଲିଗଲା)

କୁନ୍ତ—ଦେଖୁଚ ତା' ଢଙ୍ଗ ! ହଉ ! (ଡାକିଲେ) ସାଧୁ ସାଧୁ—
(ସାଧୁ ଆସିଲା)

ସାଧୁ—କ'ଣ ମା !

କୁନ୍ତ—ତମେ ଟିକଏ ଯିବକି—

ସାଧୁ—ମୁଁ ତାକୁ ଜଗିଚି ମା—

କୁନ୍ତ—ଜଗିଚ ?

ସାଧୁ—ହଁ । ଅସରଦା ଉପରେ ମୋଟେ ଶୋଉନି । ମୁଁ ଜଗି
ବସିଲାରୁ ଟିକଏ ଏଇନେ ଶୋଇଚି ।

କୁନ୍ତ—ମୁଁ କହୁଚି, ତମେ ଯାଅ—ଗୋଟାଏ ରିକ୍ସା ଡ଼ାକ ।

(ସ୍ତ୍ରୀ ଲୋକର ଚିତ୍କାର—ଦୂରରୁ)

ସାଧୁ—ହେଇତ ମା' ଦେଖ, କେମିତି ପାଟିକରି ଉଠୁଚି । ମୁଁ
ଯାଏଁ । (ଚାଲିଗଲା)

କୁନ୍ତ—ସମସ୍ତେ ମିଶି ଗୋଟାଏ ନବରଙ୍ଗ ନଚେଇଚ, ନା ? ହଉ,
କଏ ଭଲ ଏଠି କେମିତ ରହିବ—ମୁଁ ଦେଖୁଚ ।
ଗୋବ—ଅବସ୍ଥା ଯାହା ଦେଖୁଚ କୁନ୍ତ—ଏଠି ସମସ୍ତେ
ରହିବେ—କେବଳ···
କୁନ୍ତ—ମୋ ଭାଇ ରହିବେ ନାହିଁ, ନା ?
ଗୋବ—ଏ ଦୁର୍ଯୋଗ ଘଟିବ ବୋଲି କଏ ଆଶା କରିଥିଲା
କୁହ ? ଦରମା ମିଳିଲାନି ବୋଲି ମନ ଯେତେବେଳେ
ପିତା ହୋଇ ଯାଉଚ୍ଛି—ସେତକବେଳେ କୁଣିଆ ଉପରେ
କୁଣିଆ !
କୁନ୍ତ—ମୁଁ ପଚ୍ଛୁଚ ଭାଇ ଏଠି ରହିବେ ନା ନାହିଁ ?
ଗୋବ—ଆହା···ଆଗେ ସେ ଆସନ୍ତୁ ।
କୁନ୍ତ—ତମ ଭଳି ତାଙ୍କର ଦୋ' ମୁହାଁ କଥା ନୁହେଁ । ଆସିବାକୁ
ଲେଖିଛନ୍ତି ଯେତେବେଳେ ସେ ଆସିବେ । ହେଲେ, ପିଲାଙ୍କ
ପଢ଼ାଘରେ ସେ ବାବାଜଟା ସାଥିରେ ସେ କସ୍ମିନ୍ କାଳେ
ରହିବେ ନାହିଁ ।
ଗୋବ—ତମେ ତେବେ କୁହ, ସେ କୋଉଘରେ ରହିବେ ?
କୁନ୍ତ—ଏଇ ବଡ଼ ଘରେ—ଆମ ଶୋଇଲା ଘରେ ।
ଗୋବ—ଆମେ ତା'ହେଲେ ସେଷେଇ ଘରକୁ ଯାତ୍ରା କରିବା ?
କୁନ୍ତ—ହିଁ ।
ଗୋବ—ବେଶ୍ ଦଶଘଣ୍ଟା ଅପର ତା'ହେଲେ ଏଥର କୋଇଲା
ଧୂଆଁରେ କଟିବ ?
କୁନ୍ତ—ଭାଇଙ୍କ ପାଇଁ ଲାଗା ପଟା ?
ଗୋବ—ଟଙ୍କା ଯାହା ବଳିଚ, ସେତକରେ ଯାତ୍ରା ହବାର,
ହବ ।

କୁନ୍ତ—ମୋଟା ସୋଟା ଯାହା ତମ ମନକୁ ଆସିବ, ସେଇଆ ସେ ପିନ୍ଧିବେ ? ଏଇ ତମ ପସନ୍ଦ ? ଟଙ୍କା ଦ’ଶ ଭାଡ଼କୁ ବଢ଼େଇ ଦେଲ ବୋଲି ଏକଥା କହୁଚ ?

ଗୋବ—ଟଙ୍କା ଦେଲାବେଳେ ପ୍ରତିଜ୍ଞା କରି କହୁଲି ଯେ ଆଜି ପାହୁଲଟିଏ ତମ ପାଖରେ ନାହିଁ । ମୋ’ ପସନ୍ଦ ଅପସନ୍ଦ କଥା ଉଠୁଚି କାହିଁକି ?

କୁନ୍ତ—ତମ ଭାଇଙ୍କ ପାଇଁ ଯୋଡ୍ ଲୁଗା ଜାମା ଆଣିଚ—

ଗୋବ—ସେଇଆକୁ ତମ ଭାଇ ପିନ୍ଧିବେ ?

କୁନ୍ତ—ହଁ ।

ଗୋବ—ପିନ୍ଧନ୍ତୁ—ଆପତ୍ତି ନାହିଁ । ହେଲେ, ଛ’ଫୁଟ ତିନି ଇଞ୍ଚ ଲୋକର ଜାମା ତିନି ଫୁଟ ଛ’ଇଞ୍ଚ ଲୋକ ପିନ୍ଧିଲେ ସେଇଟା ଜାମା ପିନ୍ଧିଲା ପରି ନ ଦିଶି ଆଲଖାଲ୍ଲା ପିନ୍ଧିଲା ପରି ଦିଶିବ । ତଥାପି ସେ ଯେବେ ପିନ୍ଧିବେ, ପିନ୍ଧନ୍ତୁ—ସାଧୁ ବାବାଙ୍କ ଚେଲା ସାଜି ଦିନଙ୍କ ଚହଳରେ ରହିଲେ କିଛି ଅସୁନ୍ଦର ଦିଶିବ ନି ।

କୁନ୍ତ—ମୋ' ସାଥିରେ ଏମିତି ଲଗାଅନା କହି ଦେଉଚି । ତମ ପାଇଁ ଯୋଡ୍ ଲୁଗା ଜାମା ଆଣିଚ, ତାକୁଇ ମୁଁ ଭାଇଙ୍କୁ ଦେବି ।

ଗୋବ—ଏ ବତିଶ୍ ଇଞ୍ଚ ଛାତିର ଜାମା···ବୟାଳିଶ ବ'ଲା ପିନ୍ଧିବେ କେମିତି ? ଆଚ୍ଛା, ମୁଁ ବଜାରକୁ ଯାଏଁ ।

କୁନ୍ତ—ଶୁଣ ।

ଗୋବ—କ’ଣ କହୁଚ ?

କୁନ୍ତ—ଏ ଦେଢ଼ଶହଟା ଟଙ୍କା ନେଇ ଯାଅ—ତମ ଭାଇଙ୍କ ପାଇଁ ଯୋଡ୍ ଖାଦ୍ଦର ଲୁଗା ଜାମା ଜୋଡ଼ା ଆଣିଚ, ସେମିତି ଆଣିବ । ନହେଲେ ତମ ମାନ୍ ତଳେ ପଡ଼ିବ ।

ଗୋବ—ଟଙ୍କା ଅଛନ୍ତି ?

କୁନ୍ତ--ସେ କଥା ଜାଣିବାକୁ ତୁମେ କିଏ ? ( ଟଙ୍କା ଦେଇ ) ନିଅ ।

ଗୋବ—ହୁଁ । ଏତେବେଳେକେ ଦଶହରାଟା ଧୁମ୍ ଧାମରେ କଟିବାରେ ସବୁ ବାଟ ଫିଟିଲା । ହଉ, ଆସ ।

କୁନ୍ତ--କୁଆଡ଼େ ?

ଗୋବ--ମୋ ସାଥିରେ ବଜାରକୁ ଯିବ--ଆସ ।

କୁନ୍ତ--ଆରେ ନା--ନା--

ଗୋବ--ନା ନା ନୁହେଁ-- ହିଁ--ହିଁ--ଆସ ।

[ଦୁହିଁଙ୍କ ମୁହଁର ହସ ଖେଳଯାଉ ଥାଏ]

---

# ଏ ଚିତ୍ରରେ ଅଛନ୍ତି

କୁନ୍ତଳା—ଗୃହସ୍ୱାମୀ ଗୋବର୍ଦ୍ଧନ ବାବୁଙ୍କ ପତ୍ନୀ ।

ଇତି—ତାଙ୍କ ଝିଅ

ବିଜୁ—ତାଙ୍କ ପୁଅ

ସାଧୁ—ପୂଜାରୀ

ରାଧୁ—ଭୃତ୍ୟ

ନାହାନ୍ତି—ସ୍ୱୟଂ ଗୋବର୍ଦ୍ଧନ ବାବୁ

ନୂଆ ଦେଖା ଦେଉଚନ୍ତି—ଦିଗମ୍ବର, ଏମାନଙ୍କର ଦୂର ସଂପର୍କୀୟ ଜଣେ ଆତ୍ମୀୟ । ପ୍ରୌଢ଼ ।

# ତୃତୀୟ ଚିତ୍ର

## ପ୍ରଥମ ଦୃଶ୍ୟ

[ଗୋବର୍ଦ୍ଧନବାବୁଙ୍କ ଘର । ସମୟ—ଶୀତକାଳର ଏକ ସନ୍ଧ୍ୟା ।
ବଜୁ ଆଉ ଇନ୍ଦ ଦୁହେଁ ଆଲୋଚନା-ରତ]

ବଜୁ—ତୁ କଣ୍ଟୁ ଜାଣିନୁ ଅପା, ସାର୍ ଆଜ ଆସିବେ ।

ଇନ୍ଦ—ମୋଟେ ଆସିବେ ନାହିଁ ।

ବଜୁ—ଗୃରବଦନ ହେଲ ଆସି ନାହାନ୍ତି—ଆଜ ଆସିବେ ନାହିଁ ? ନିଶ୍ଚେ ଆସିବେ ।

ଇନ୍ଦ—ଆସିବେ କେମିତି ? ସେ ଘର ଯାଇ ତାଙ୍କ ଘରେ—ତାଙ୍କ ଗାଁରେ ।

ବଜୁ—ତୁ' ଟା ଭର ବୁଦ୍ଧିଆ ! ଗାଁକୁ ଗଲେ ଆଉ ଫେରି ଆସନ୍ତି ନାହିଁ ପରା । ତୁ ଖରାଛୁଟିରେ ଗାଁକୁ ଯାଇଥିଲୁ । ଆଉ ଆସିଲୁ ନାହିଁ ? ସେଇଟି ରହିଲୁ ?

ଇନ୍ଦ—କେମିତିକା ମୂର୍ଖଙ୍କ ଭଳି କଥା କହୁଚୁ ? ସାର୍ ପାଞ୍ଚଦିନ ପାଇଁ ଘରକୁ ଯାଇଚନ୍ତି—ଆଜ ପାଞ୍ଚଦିନ ପୂରୁଚି । ଆଜ ଗୁଡ଼ କାଲି ସେ ଆସିବେ ।

ବଜୁ—କିଏ କହୁଚି ଏ କଥା ?

ଇଛ—ମୁଁ କହୁଚ—ବୋଉ କହୁଚ ।

ବଜ୍ରୁ—ଚାଲିଲ୍, ବୋଉକୁ ପଚାରିବା ।

ଇଛ—ପଚାର୍ ।

ବଜ୍ରୁ—
ଇଛ— } —(ଡାକଲେ) ବୋଉ—ବୋଉ—ହେ ବୋଉ ।
(କୁନ୍ତଳା ଆସିଲେ)

କୁନ୍ତଳା—କରେ କ'ଣ—କ'ଣ ? ଏମିତ କାହିଁକି ହଉଚ ?

ଇଛ—ସାର୍ ସେଦିନ କହି ଯାଇ ନ ଥିଲେ ବୋଉ··· ?

ବଜ୍ରୁ—ତୁ ରହ ମୁଁ ପଚାରୁଚ ।

କୁନ୍ତ—ହଇରେ କ'ଣ ?

ବଜ୍ରୁ—ସାର୍ ଘରକୁ ଯାଇଚନ୍ତି ଯେ···ଆସିବେ ନାହିଁ ।

ଇଛ—ବଦ୍‌ମାସ ଟୋକା—ମୁଁ ଏଇଆ କହିଲି ?

କୁନ୍ତ—ଆଲୋ ଇଛ—କଥା କ'ଣ ?

ଇଛ—ତୁ କହିବୁଟି ବୋଉ, ସାର୍ ଆଜ ଆସିବେ କି ନାହିଁ ?

କୁନ୍ତ—ନା, ଆଜ ଆସିବେ ନାହିଁ ।

ଇଛ—ଦେଖିଲୁ ?

ବଜ୍ରୁ—ସତ କହୁଚୁ ବୋଉ ସାର୍ ଆସିବେ ନାହିଁ ?

କୁନ୍ତ—ନା—ଆସିବେ ନାହିଁ ।

ବଜ୍ରୁ—ତା' ହେଲେ ଅପା, ଚାଲଆ···

କୁନ୍ତ—କରେ, କୁଆଡ଼େ ଯିବ ? ହଇଲୋ ଇଛ, ବଜ୍ରୁ କ'ଣ କହୁଚ ?

ବଜ୍ରୁ—ନାହିଁ ବୋଉ, ସାର୍‌ତ ଆଜ ଆସିବେ ନାହିଁ······

କୁନ୍ତ—ସେଇଥି ପାଇଁ ପଢ଼ାପଢ଼ି କିଛି ହବ ନାହିଁ, ନା ?

ବଜ୍ରୁ—ହଁ ବୋଉ, ଆଜ ଦିନଟା ଆମର ପୂରା ଛୁଟି ।

କୁନ୍ତ—ସବୁବେଳେ ତ ଛୁଟି । ପାଠ ପଢ଼ିବ କେତେବେଳେ ?
ସାର୍ ଆସିବେ ନାହିଁ ବୋଲି ଖବର ପଢ଼ା ବନ୍ଦ !! ଏ ବୃହଦ୍‌ନ ତ ବାପା ଖବରକୁ ପଢ଼ନ୍ତି ଥିଲେ । ତେବେ ଯା'—ଯା' ଇତ୍ତ—ଅଲଅ ଲଗେଇ ପଢ଼ିବସ—ବାପାଙ୍କ ଆସିବାବେଳ ହେଇ ଗଲଣି—

ବଜ୍ରୁ—ମଜାତ ସେଇଠି ବୋଉ !

କୁନ୍ତ—ମଜା ! ହଇଲେ ଇତ୍ତ—କଥା କ'ଣ ? କ'ଣ ଏ ଚୋଙ୍କା କହୁଛ ?

ଇତ୍ତ—ନାହିଁ ବୋଉ, ବାପା ଆଜି ଫେରୁ ଫେରୁ ରାତି ବାରଟା କି ଗୋଟାଏ ହବ ।

ବଜ୍ରୁ—ଆଉ, ବାରଟା ଗୋଟାଏ ରାତିରେ କିଏ ପାଠ ପଢ଼େ ନା ଆମେ ପଢ଼ିବୁ ?

କୁନ୍ତ—କିଏ କହିଲା ସେ ଆସିବେ ନାହିଁ ?

ଇତ୍ତ—ଏଇନେ ପରା ବାପାଙ୍କ ଅଫିସରୁ ଜଣେ ଲୋକ ଆସିଥିଲା ।

ବଜ୍ରୁ—ସେଇ ଯୋଉ ରୋଗୀଣା ହେଇ ଲୋକଟା—ଏଡ଼େ ଏଡ଼େ ନଖ ରଖିଛ—କ'ଣ ତା' ନାଁଟି ?

ଇତ୍ତ—ଦୁଃଶାସନ । ସେଇ ଆସି କହିଁ ଦେଇଗଲା—ବାପାଙ୍କର ଆଜି ଫେରୁ ୨ ଡେରି ହବ—ବାରଟା କି ଗୋଟାଏ ।

ବଜ୍ରୁ—ତାଙ୍କ କଲବ୍‌ରେ କ'ଣ ଫିଷ୍ଟି ହଉଛ ଯେ—

କୁନ୍ତ—କୋଉଠି !

ଇତ୍ତ—ତାଙ୍କ କ୍ଳବରେ, ଦୁଃଶାସନ କଲବ୍ କହିଥିଲା ବୋଲି ବଜ୍ରୁ ତାକୁ ଥଟା କରି କହୁଛ—କଲବ୍ ।

କୁନ୍ତ—ସେ' ତା'ହେଲେ ଏଇନେ ଆସିବେ ନାହିଁ ?

ବିଜୁ—ମୁଁ ସେଇଆ କହୁଥିଲି ବୋଉ, ସାର୍ ଆସିବେ ନାହିଁ—ବାଯା ଆସିବେ ନାହିଁ—ଆଜ ଆମର ପୂରା ଛୁଟି ।

କୁନ୍ତ—ହଇଲେ ଇତି—ତୋର ବି ଏଇ କଥା ? ତୁ ଆଜ ପଢ଼ିବୁ ନାହିଁ ?

ଇତି—ଆଜ ଏଇ ବେଳାକ ତ ବୋଉ—କାଲି ସ୍କୁଲ ବନ୍ଦ—ପଢ଼ାପଢ଼ି କରୁଛୁ ନାହିଁ ।

କୁନ୍ତ—ନ ପଢ଼ି କରିବ କ'ଣ ? ଫଜ ବୁଢ଼ୁ ବୁଢ଼ୁ ଶୋଇବ ?

ବିଜୁ—ନା ବୋଉ, ଆମେ ଶୋଇବୁ ନାହିଁ—ଦଶଟା ଆଗରୁ ମୋଟେ ଶୋଇବୁ ନାହିଁ ।

କୁନ୍ତ—ଆଉ କ'ଣ ଖେଳିବ ?

ଇତି—ହଁ ବୋଉ, ବୁଦ୍ଧି ପରୀକ୍ଷା ।

କୁନ୍ତ—ସେଦିନ ଯୋଉ ଖେଳ ଖେଳୁଥିଲ ? ବୁଦ୍ଧି ପରୀକ୍ଷା ହଉ ହଉ ବଳ ପରୀକ୍ଷା !! ପାଞ୍ଚ ମିନିଟ ଯାଇଥିବ କି ନାହିଁ—ତୋର ତେଁ—ତା'ର ତେଁ ! ମୁଁ ପାରିବ ନାହିଁ ଲେ ମା ! ସିଏତ ଘରେ ନାହାନ୍ତି, ମୋର ତମ ଦ'ଟାଙ୍କୁ ସମାଳିବ କିଏ ! ଯା'—ତେମେ ମନକୁ ପଢ଼ିବ ଯା । ହେ ବିଜୁ !

ବିଜୁ—ଅପାକୁ କହୁନୁ ।

କୁନ୍ତ—ହଁ, ତେତେ କହୁଛି—ଅପାକୁ କହୁଚି··· ଦହେଁ ପଢ଼ିବ ଯା'—

ବିଜୁ—ଅପା ନ ପଢ଼ିଲେ ମୁଁ ପଢ଼ିବ ନାହିଁ ।

କୁନ୍ତ—ବଦ୍‌ମାସ ଟୋକା ! କେମିତି ଅଗଚଳ ପଡ଼ କଥା କହୁଛ ? ଅପା ତେତେ ମନା କରିଛି ପଢ଼ିବ ନାହିଁ ?

ବିଜୁ— ତାକୁ ପଚାର ।

କୁନ୍ତ—ଅଲେ ଇଭ, ଯା, ମା—ପଢ଼ିବୁ ଯା । (ଇଭ ସୁଁ ସୁଁ ହୋଇ କାନ୍ଦିବାକୁ ଆରମ୍ଭ କଲାଣି ।) ଏଇ ଦେଖୁଚ—ନାକ ସୁଁ ସୁଁ କଲଣି !......କ' ନାକ କାଧୁଣୀ ଝୁଅଟାଏ ଇଏ ହୋଇଚ ? କଥା କଥାକେ ସୁଁ—ସୁଁ !! ଆଲେ, ନ ପଢ଼ିବୁତ ନାହିଁ । ଏଠି ଠିଆହୋଇ କାହିଁକି ଅଣ୍ଟ ମଡୁଚୁ ?

ବଜୁ—ହୋଇଚ ବୋଉ, ମୁଁ ହିବାର ସତ୍ୟ କରି କହୁଚି—ଆଜି ଆମେ ମୋଟେ କଳି କରିବୁ ନାହିଁ ।

କୁନ୍ତ—ଓଃ ! ଯୋଡ଼ ମଣିଷଟାଏ ହେଲଣି ନା—ସତ୍ୟ କରୁଚ !! ହଉ ଯା—ଯା—କ' ଖେଳ ଖେଳୁଚ, ଖେଳିବ ଯା...

ବଜୁ—ଚୁଲଅ ଅପା । ଆଗେ ତୋ ବୁଦ୍ଧି ମୁଁ ପରୀକ୍ଷା କରିବି । ଆଚ୍ଛା କହିଲୁ—ଆମେ ଖେଳୁ ଖେଳୁ ଯଦି ସାର୍ ଆସି କେମିତି ହେଲେ ପହଞ୍ଚି ଯାନ୍ତି, ତାଙ୍କୁ କଣ କହି ଫେରେଇ ଦବା ?

କୁନ୍ତ—ହଇରେ, ଏଇ ବୁଦ୍ଧି ପରୀକ୍ଷା ହବ ?

ବଜୁ—ନାହିଁ ବୋଉ, ଆଉ କେତେ ବଢ଼ିଆ ବଢ଼ିଆ କଥା ଅଛି—ଆ' ଅପା—ଏ ପଟକୁ ଆ । ( ଦୁହେଁ ଚୁଲିଗଲେ )

କୁନ୍ତ—ସ୍ୱାମୀଙ୍କର ପୁଣି ଏତିକି ବେଳେ ଫିଷ୍ଟ କରିବାର ଥିଲା ! ଯେମିତି ଥଣ୍ଡା ପଡ଼ି ଆଇଲଣି—ସବୁ ଅଧ ଯାଏ ବାହାରେ ରହି ନକେ ତ ଭେଗିବେ—ତା' ସାଙ୍ଗରେ ମଦେ ପୁଣି ସନ୍ତୁଳି ଖାଇବେ ।.........ଇଲେ...ଇଲେ !! ମୋ ମନେତ ନାହିଁ—(ବଡ଼ ପାଟିରେ) ସଧୁ—ସଧୁ—ଅରେ ସେ ମାଗୁର ମାଛଟାକୁ.....

ସଧୁ—(ଦୂରରୁ) ଦଉଚି ମା—ନମିଟକରେ ମାରି ଦଉଚି । ସେଉକଅ ମାଗୁରଟାଏ—ଏଡ଼େ ଏଡ଼େ ଶିଙ୍ଗ ! ନନ୍ଦେ ପାଣି

ଭିତରୁ କ'ଣ ସନ୍ଦକରେ ଧରି ଦଉଛ !! ଦଉଛ ମା—
ନାମ୍ବିରେ ମାରି ଦଉଛ—

କୁନ୍ତ—ଅରେ ମାରିବା ଦରକାର ନାହିଁ—ତୁ ଏଣେ ଶୁଣିଯା—
(ଗଧୁ ଆସିଲା)

ଗଧୁ—କ'ଣ କହୁଛ ମା ?

କୁନ୍ତ—ମାଛଟାକୁ ମାର ନା—ଥାଉ !

ଗଧୁ—କାହିଁକି ମା— ବାବୁ ପରା କହିଯାଇଥିଲେ, ଏ ବେଳାକୁ
ମାଗୁର ମାଛ ଝୋଳ ହେବ । ବାବୁଙ୍କର ମାଗୁର ମାଛରେ
ଭାରି ଶରଧା ।

କୁନ୍ତ—ସେଇଥି ପାଇଁ କହୁଚି—ମାଛଟା ଥାଉ । ବାବୁ ଆଜି ଘରେ
ଖାଇବେ ନାହିଁ । ତାଙ୍କର ତେଣେ ପିକ୍ନିକ୍ ହଉଛି । ପୁଣ୍ୟାଗି
କାହିଁ ଗଲା ?

ଗଧୁ—ଗୁଲି ନଗେଇବାକୁ ଗଲେଣି ନା କ'ଣ ! ( ଡାକିଲା )
ସାଧୁ ଭାଇନା—ଓ ସାଧୁ ଭାଇନା—ଭାଇନା ଶୁଣୁଚ ?

ସାଧୁ—( ଦୂରରୁ ) ହଁ...ହଁ...

ଗଧୁ—ମା' ଡାକୁଚନ୍ତି ଏଣେ ଶୁଣି ଯାଅ ।

ସାଧୁ—ଯାଉଛି (ଗୁଣୁ ଗୁଣୁ ହେଇ କହି କହି ଆସିଲା) ମଣିଷର
ଦାନ୍ତ ମୁଣ୍ଡ ହେଇ ଆଉ କିଛି ରହିଲା ନାହିଁ!!'ଦ'ଦନ ହେଲାଣି—
ଏମିତି ଅବସ୍ଥା ଯେ,—ଉଠି ବସି ପାରୁ ନାହିଁ ।...

କୁନ୍ତ—କଅଣ ସାଧୁ, କ'ଣ ହେଲା ? ଏମିତି କୁନ୍ଥଉଛ କାହିଁକି ?

ସାଧୁ—ନାହିଁ ମା—ଏ ବାଇଟା—ଏମିତି ଭୟ ଦେଇଚି ଯେ,
ମତେ ଅଣା ନିଶ୍ୱାସ କରି ଛାଡ଼ିଲାଣି ।

କୁନ୍ତ—କ'ଣ ତା' ହେଲେ କହୁଚ ?

ସାଧୁ—କହିବ ଆଉ କ'ଣ ମା ? ସଅଳ ସଅଳ ଗୋଟେଷେଇ ମୁଠାକ ସାରି ଦେଲେ—

କୁନ୍ତ—ଅଜ ଦିନଟା ଏବେ ଗୋଷେଇ ନ କର ।

ସାଧୁ—ଏ କଥାକୁ ମୋର ବିଶ୍ୱାସ ଅଛି ନା ମା !···ପର ଘରେ ଯେତେବେଳେ ମୁଣ୍ଡ ବିକୁଛି···

କୁନ୍ତ—ତମେ ଏମିତି ଅଭିମାନ କାହିଁକି କରୁଚ ହେ ? ବାବୁତ ଏ ବେଳା ଖାଇବେ ନାହିଁ—

ସାଧୁ—ବାବୁ ଖାଇବେ ନାହିଁ ?

କୁନ୍ତ—ନା—ସେ ଖାଇବେ ନାହିଁ—ମୋର ତ ଆଜ ଘିଅ ଖିଅ ନାହିଁ—

ସାଧୁ—ତା' ହେଲେ ମା' ଗୋଷେଇ କରିବ କାହିଁକି ?

କୁନ୍ତ—ମୁଁ ସେଇଆ କହୁଥିଲି । ଗୃହଟା ବେଳେ ଯୋଉ ଜଳଖିଆ କରିଥିଲି—ବାଳୁ ଇତିଙ୍କର ସେଇଥିରେ ଚଳିଯିବ । ବାକି ତମ ଦି'ଜଣଙ୍କ କଥା!

ସାଧୁ—ଆମ କଥା ପଚାରୁଚ କିଏ ମା ! ଆମ ପେଇଁ ପୁଣି ଗୋଟାଏ ଚୁଲି ଜଳିବ ? ଆମର ପଖାଳ ଅଛି--ନା, ଜଣରେ ସାଧୁ

ସାଧୁ—(ରହୁ, ରହୁ) ପଖାଳ ! ଏ ଥଣ୍ଡା ଦିନେ ସଞ୍ଜ ବେଳାଟାରେ ପଖାଳ ଖାଇଲେ······

ସାଧୁ—କ'ଣ ଏମିତି ଗୋଟାଏ ଦିନରେ ସବୁ ଓଲଟି ପଡ଼ିଲା ଭଳିଆ କଥା କହୁଚ ବା ? ମୁଁ ବାଇ ବେମାରିଆ ଲୋକଟା ତ ପୁଣି ପଖାଳ ଖାଇବାକୁ ରାଜି ହଉଚ ! ବେଳ ପଡ଼ିଲେ ତ ତିନିଦିନର ବାସି ପଖାଳ ଅଣ୍ଟିବ ନାହିଁ—ଇଏତ ସଜ ପଖାଳ ।

ମାଳ ଘରେ କ'ଣ ଏମିତି ବେଳ ଅବେଳରେ ଚାଲି ଯାଏ ନାହିଁ ! ଇଏ ଘର ଦର ବୋଲି ଆମେ ଗୋଡ଼ ଲମ୍ବେଇବା ?

ସାଧୁ—ମୁଁ ଜାଣିଛି ମ ଭଉଣୀ—ଆଉ କୁହ ନାହିଁ ! ଘର ଦର ବୋଲି ଏଇନେ ଘରୁ ଅପ୍ରସରୁ ଘର କଥା କହୁଥିଲି । ଖାଲି ମୋର ବେଳକୁ—

କୁନ୍ତ—ଓହୋ ! ତେମେ ଧାହେଁ କ'ଣ କଲି କଜିଆ କରିବାକୁ ମୁଁ ତମକୁ ଏଠିକି ଡାକଥିଲି ...ସାଧୁ ମୋ' ଦେହରେ ଯଦି ପଖାଳ ନ ଚଳିବ--

ସାଧୁ—ନାହିଁମ ମା' ଚଳିବ ନାହିଁ କାହିଁକି ? ମୋର ସବୁ ଚଳେ । ମୁଁ ଏଇ ଭଉଣୀଙ୍କ କଥା କହୁଥିଲି । ରୋଷେଇ କରିବାକୁ ମନ ନାହିଁ ବୋଲି—କେଡ଼େ ଧାରକା ଘଡ଼ୁଚନ୍ତି !

ସାଧୁ—ରୋଷଇ ହେଲେ କ'ଣ ଖାଲି ମୋର ଛୁଟି—ତୋର ନୁହେଁ ?

ସାଧୁ—କିଏ ମନା କଲିକି ? ତେମେ ତ ତମର ଚୁଲି ମୁଣ୍ଡରେ ହୁଙ୍କାଟା ମେନ୍ତେ ବଇଥିବ—ମୁଁ ତ ଚମ୍ପୀ ଭଲ ଘାଇଟା ସାରୁ ବୁଲୁ ଥିବି ।

ସାଧୁ—ସେଇ କଥା ମୁଁ କହୁଥିରେ ସାଧୁ--ମା'ଙ୍କ ଦୟାରୁ ଏ ବେଳା ରୋଷେଇ ବନ୍ଦ ହେଲେ ତୋର ଛୁଟି—ମୋର ବି ଛୁଟି ।

କୁନ୍ତ - ହଉ, ହେଲା ସୁବିଧା—ଯାଅ । ବଜୁ ଇତିଙ୍କ ଭଲ ଆଜି ତମ ଦୁହିଁଙ୍କର ବି ଛୁଟି ! ମୁଁ ଯାଏ—ତେଣେ ସେ ଦି'ଟା କ'ଣ କରୁଚନ୍ତି, ଦେଖେଁ । (ପ୍ରସ୍ଥାନ)

ସାଧୁ—କ'ଣ ଭଉଣୀ—ମନକାମନା ପୂରିଲାଟି ?

ସାଧୁ—କି କାମନା ?

ସଧୁ—ଧନ...ଗୃହର ନବାଜୁଣୁ ମନ ଭିତରେ ଗୁଇଁ ଗାଇଁ ହଉଥେଲ—ଦହଣ୍ଟା କେମିତ କେମିତ ହଉଛି—ସେଷଘରକୁ ଯିବାକୁ ମନ ହଉ ନାଇଁ—

ସାଧୁ—ମିଛରେ ଏମିତ ହଉଥିଲ ? ମୋ ଦେହ କଷ୍ଟୁ ହେଉ ନାଇଁ ? ଘଣ୍ଟାଟାଏ ଏମିତ ବାଇ ଭିଉଲେ ଜୀବନଟା କ'ଣ ହୁଏ...ପୁଅ ବୁଝନ୍ତୁ !

ସଧୁ—ମୁଁ କ'ଣ ମନା କରୁଛି ଭଇନା ? ବାଇ ବେମାର ଘେରି ନାଇଁ ସତ; ହେଲେ, ବାହା ହୋଇ ନାଇଁ ବୋଲି କ'ଣ ବୈରଯାଣୀ ହେଇ ଯାଇନ ? ହଉ ହଉ, ଟିକେ ସେଷ ଘରକୁ ଚାଲବଟି ।

ସାଧୁ—କାଇଁକି ?

ସଧୁ—ମତେ ମୁଠେ ପଖାଳ ବାଢ଼ିଦେବ !

ସାଧୁ—ଏଇ ଝଳ ବେଳଟାରୁ ?

ସଧୁ—ହଁ ଭଇନା— ସଅଳ ସଅଳ ଦି'ଟା ଖାଇ ହେଇ ମୁଁ ବାହାରି ପଡ଼ିବ ।

ସାଧୁ—କେଉଁଠିକି ଚଲ୍ବ ?

ସଧୁ—ଆଜିତ ଛୁଟି ମିଳିଛି, ଟିକଏ ଥେଟର ଦେଖି ଆସିବ ।

ସାଧୁ—ପଇସା ? ପଇସା ପଡ଼ିବ ନାଇଁ ?

ସଧୁ—ଆମ ଗାଁ କେଳୁ ବାବୁ ବହୁ ଲେଖଚନ୍ଦ୍ର—ବାବୁଙ୍କୁ କହି ମାଗଣା ଚାଲିଯିବ,

ସାଧୁ—ଏଁ ! ତୋତେ ମାଗଣା ଛାଡ଼ି ଦେବେ ?

ସଧୁ—ହଁ ତେମେ ଯିବ କି ? ଯିବତ କହ, ତମକୁ ନେଇ ଯିବି ।

ସାଧୁ—ଯିବାକୁ ପୁଣି ନାହିଁ କରିବ କିଏ ? ...ଚାହିଁଲ—

ଗାଧୁ—ବାଇ ଖୋଜୁଚ ? ···ଚାଲନ୍ତ ଭାଇନା, ଥିଏଟର ଦେଖି
ଦେଖି ବାଇ କୁଆଡ଼େ ଗୁଡ଼ ପଳେଇଛ ।

ସାଧୁ—ପୋ ଭାଇଟା ପରା, ଚାଲ୍ । ଖାଲି ମା'ଙ୍କୁ ଟିକେ କେମିତି
କହି ବୋଲି ଖସିଗଲେ ହେଲା । ହଁ, ଏଇନେ ତୁ ଅଉ
ଖାଇବୁ କାହିଁକି ? ତେଣୁ ଫେରି ଦହେଁ ସାଙ୍ଗ ହୋଇ
ଖାଇବା ।

ଗାଧୁ—ହଉ ଚାଲ୍ ।

ସାଧୁ—ରହ ମୁଁ ଜାମାଟା ଗଳେଇ ଦେଏ । (ଜାମା ପିନ୍ଧିଲା)
ଅରେ ଗାଧୁ, ଟିକିଏ ତେଲ ବୋତଲଟା ସେଠୁ ଦବୁଟି ।

ଗାଧୁ—ମଲା, ତେଲ ବୋତଲ କ'ଣ ହେବ ?

ସାଧୁ—ମୁଣ୍ଡଟା ନୁଖୁରା ହୋଇଚି—ତେଲ ମାରି ଟିକିଏ ସାଉଁଳି
ଦେବି ।··· ହଁ ରେ ଗାଧୁ, ଏ ଚାଦରଟା କାନ୍ଧରେ
ପକେଇବି ? ଦକ୍ଷିଣି ଚାଦରଟା ସେମିତି ଆଠ ଭାଙ୍ଗ ହୋଇ
ଥୁଆ ହୋଇଚି—ପକେଇବି ?

ଗାଧୁ—ପକଉନ, କିଏ ମନା କରୁଚ୍ଛି ? (ତେଲ ବୋତଲ ଦେଇ
ଗାଧୁ ନିଜେ ଜାମା ପିନ୍ଧିଲା)

ସାଧୁ— ତୁ କ'ଣ ଗୋଟାଏ ଚକ ଚକିଆ ଜାମା ପିନ୍ଧିଲୁଣିରେ ?

ଗାଧୁ—ତେମେ କୋଉ କମ୍ ବେଶ ହୋଇଚ କି ? ଇସ୍ ଇସ୍
ଭାଇନା, ମୁହଁ ଉପରକୁ ତେଲ ଗଡ଼ି ଆସୁଚ୍ଛି—ପୋଚ୍ଛି
ପକାଅ । (ସାଧୁର ପ୍ରସାଧନ ଶେଷ ହେଲା)

ସାଧୁ—ବେଶ୍—ଏଥର ଚାଲ୍ । ··· ହଁ ଗାଧୁ, ବାଡ଼ିଟା ହାତରେ
ନଉଚ୍ଛି—ଏଇ ବଙ୍କୁଲି ବେତ ବାଡ଼ିଟା ମ—ଦେଖିଲୁ !

ଗାଧୁ—ଭାଇନା,···ତେମେ ଥିଏଟର ଦେଖି ଯିବ ନା ନିଜେ
ଥିଏଟରରେ ବାହାରିବ ?

ସାଧୁ—ଅରେ ଗୋଟାଏ ଏମିତିକା ଜାଗାରୁ ଚେପଢେବେଳେ
ଯାଉନଛି—ପୃଥ୍ୱୀଗ୍ର ଗୃକର ହୋଇଲ୍ଲ ବୋଲି କ'ଣ ଅଭେଦ୍ୟ
ହୋଇ ଯିବା ? ଅରେ ସାଧୁ,ପାନ ଦ'ଶେ୍ର ଭଙ୍ଗ୍ । ରହ ରହ,
ମୁଁ ଢ'ଠା ଅଲେଚ ଦାନା ଆଣେ—

ସାଥୁ—ଅସ୍ତ୍ରେ ଭାଇନା—ଅସ୍ତ୍ରେ ! ଟଥଠର ନ ଦେଖୁଣୁଛ
ଛମ ବାଇ କୁଅଡ଼େ ଉଭେଇ ଗଲଣି ।

କୁନ୍ତ—(ଦୂରରୁ) ସାଥୁ—ସାଧୁ—

ସାଧୁ—ହୋଇ, ଭାଇନା ! ମା ଡାକଲେଣି !

(କୁନ୍ତଳା ଅସିଲେ)

କୁନ୍ତ—ସାଧୁ !

ସାଧୁ—କ'ଣ ମା—

କୁନ୍ତ—ସାମାୟଣ ବହିଟା କ'ଣ କଲ୍ କ ?

ସାଧୁ—ହୋଇଛି ମା, ଏଇ ଥାକ ଉପରେ ଅଛି ।

କୁନ୍ତ—କଓ, ଇଏ କ'ଣ ? ତେମେ ଏମିତି ବେଶ ହୋଇ କୁଆଡ଼େ
ବାହାରିଲଣି ! କରେ ସାଧୁ, ତୁବତ ଜାମା—ଯୋଡ଼
ହୋଇଚୁ ? କଥା କଣ ?

ସାଧୁ—ନାଇଁ ମା, ଭାଇନା କହିଲେ କି······

ସାଥୁ—ହଇଟର, ଭାଇନା କହିଲେ ନା ତୁ କହିଲୁ ?

କୁନ୍ତ—ତମର ପରା ଦେହ ଭଲ ନାହିଁ ସାଧୁ ?

ସାଧୁ—ହଁ ପରା ମା, ଅଣ୍ଟାଠା ଖାଲି ଟନ୍ ଟିନ୍ ହଉଚି ।

କୁନ୍ତ—ଏମିତି ବେଶବାସ ହୋଇ ବୁଲି ଆସିଲେ ଅଣ୍ଟା ଭଲ
ହୋଇ ଯିବ ପରା ?

ସାଧୁ—ନାଇଁ ମା' ବୁଲି ଯାଉଚ କଏ ?

କୁନ୍ତ—ଆଜ କ'ଣ ଡାକ୍ତର କବିରାଜ ପାଖକୁ ଯାଉଚ ?

ସାଧୁ—କବିରାଜ !! ··ହଁ ମା, ସାଧୁ କହୁଥିଲା କବିରାଜ ଦୋକାନରୁ
ପାଟେନ ଔଷଧ ଖାଇଲେ—

କୁନ୍ତ—କବିରାଜ ଦୋକାନକୁ ଔଷଧ ଖାଇ ଯିବାକୁ ପୁଣି କାନ୍ଧରେ
ଦକ୍ଷିଣୀ ଚଦର, ହାତରେ ବଙ୍କୁଲ ବେତ,...ମଥା ଉପରେ
ଭାଙ୍ଗ ଗଡ଼ ସୁନ୍ଦାକଣ୍ଠା ହେଉଛି—ହଉରେ ସାଧୁ, କଥା
କ'ଣ ?

ସାଧୁ—ଏ ସଂଜ ବେଳଟାରେ କାହିଁ ମିଛ କଥା କହୁଚ
ଭଉନା ? କବିରାଜ ପାଖକୁ କିଏ ଯାଉଚି !

କୁନ୍ତ—ଆଉ ତେବେ କୁଆଡ଼େ ବାହାରୁଚ ?

ସାଧୁ—ଆମେ ଟିକେ ଥେଟର ଦେଖି ଯାଉଚୁ ।

କୁନ୍ତ—(ହସି ହସି) ମୁଁ ଆଉ ପାରିବ ନାହିଁଲେ ମା ! ଛୁଟି
ବୋଲି ଯାଇ ଥେଟର ଦେଖାରେ ତେମେ ଦହେଁ ଉଠିଲଣି !

ସାଧୁ—କେବେତ ଯୋଗ ପଡ଼େ ନାହିଁ—ଆଜି ଦିନଟା ଟିକିଏ
ରିହାତି ମିଳିଲା ବୋଲି, ବାହାରି ପଡ଼ୁଚୁ ।

କୁନ୍ତ—ହଉଯାଅ, । ଛୁଟିତ ପାଇଚ—ମଉଜ କରି ଆସ ।

ସାଧୁ—ମା' କଣ ଏଇନେ ବସି ରାମାୟଣ ପଢ଼ିବେ ?

କୁନ୍ତ—ବଜୁ ଇତଙ୍କ ମନ କେମିତି ଆଜି ଘରୁ ମିଳି ଯାଇଚି ।
ମାଷ୍ଟ୍ରେ ନାହାନ୍ତି—ବାପା ନାହାନ୍ତି—ଦହେଁ ମହା ଖୁସିରେ
ବୁଦ୍ଧି—ଖେଳ ଖେଳୁଚନ୍ତି । ତେମେ ଦହେଁତ ଥିଏଟାର
ବାହାରିଲଣି । ମୁଁ ଯାଏଁ—ଦ ଅଧ୍ୟାୟ ରାମାୟଣ ପଢ଼େ ।
ଘରେ ଥିଲାବେଳେ ତାଙ୍କର ସବୁବେଳେ ବହି କାଗଜ ଟଣା
ଚାଲି ଥିବଟି--ବେଳ ଅବେଳରେ ମୁଁ ଖଣ୍ଡେ ଅଧେ ବହି
ଧରିଲେ ତାଙ୍କ ଦେହରେ ଯିବ ନାହିଁ ! ଠିକ୍ ସେତିକ ବେଳକୁ

ଦୁନିଆ ଯାକର କାମ ବନ୍ଦ କରିବେ । ଆଜି ଚିକିଏ ଛୁଟି ମିଳିଚି...

ସାଧୁ—(ଭାରି ଖୁସି ମନରେ) ଯାହା କହୁଚନ୍ତି ମା—ଆଜି ସମସ୍ତଙ୍କର ଛୁଟି । ଚାଲ୍ ରାଧୁ ଚାଲ୍...

(ଏମାନେ ଯିବାକୁ ବାହାରିଲା ବେଳେ ସଦର ଦରଜାରେ ଠକ୍ ଠକ୍ ଶବ୍ଦ ଶୁଣାଗଲା ।)

କୁନ୍ତ—କିଏ ଡାକୁଚି ନା କ'ଣ ?

ରାଧୁ—ବାବୁ ଆଇଲେ କି ?

ସାଧୁ—(ଚମକି ଉଠି)ଏଁ ! ବାବୁ ଆଇଲେ !!

କୁନ୍ତ—ଆରେ ! ତେଣେ ଯାଇ ଦେଖ, କିଏ ଡାକୁଚି ? କବାଟ ଖୋଲା ଅଛି ?

ସାଧୁ—ହଁ ।

କୁନ୍ତ—ତା ହେଲେ ବାବୁ ନୁହନ୍ତି ।

ସାଧୁ—ଠିକ୍ କଥା । ବାବୁ ହୋଇଥିଲେ ଘରକୁ ନ ଆସି କବାଟ ଠକ୍ ଠକ୍ କରନ୍ତେ କାହିଁକି ? କିଏ ବାହାର ଲୋକ । ଆ ରାଧୁ । ତାକୁ ସିଆଡ଼େ ସିଆଡ଼େ ବିଦା କରି ଦେଇ ଆମେ ଆମର ଥେଟର ଦେଖି ଯିବା । ଆ ।

(କିନ୍ତୁ ଏମାନେ କେହି ଯିବା ପୂର୍ବରୁ କଥା କହି କହି ଦିଗମ୍ବର ଆସିଲେ । ଦେହରେ ଧୋତି—ପଞ୍ଜାବୀ । ହାତରେ ବ୍ୟାଗ୍ । କୁନ୍ତଳା ବିପର୍ଯ୍ୟସ୍ତ ଢଙ୍ଗରେ ଚାଲିଗଲେ)

ଦିଗମ୍ବର—ଗୋବର୍ଦ୍ଧନ ବାବୁ ଘରେ ଅଛନ୍ତି ?

ରାଧୁ—ଆଜ୍ଞା—

ଦଗ—ଏଇଟା ଗୋବର୍ଦ୍ଧନ ବାବୁଙ୍କ ଘର ତ ?
ସାଧୁ—ଆଜ୍ଞା ହଁ ।
ଦଗ—ଗୋବର୍ଦ୍ଧନ ଘରେ ନାହାନ୍ତି ?
ସାଧୁ—ନା ଅଜ୍ଞା, ନାହାନ୍ତି ।
ଦଗ—ତମେ ଦୁହେଁ କିଏ ?
ସାଧୁ—ଆଜ୍ଞା···

(ଦଗମ୍ବରଙ୍କ ଏପରି ନିଃସଙ୍କୋଚ ଭାବ ଦେଖି ସାଧୁ ଟିକେ ହତ୍‌ବୁଦ୍ଧି ହୋଇ ଯାଇଛି । ସାଧୁ କିନ୍ତୁ ଅବିଚଳିତ । ଏହା ଅବଶ୍ୟ ତାର ଅପେକ୍ଷାକୃତ ସ୍ୱଳ୍ପ ବୁଦ୍ଧିର ପରିଚାୟକ)

ଦଗ—ତୁମେ ଦୁହେଁ କିଏ ଏ ଘରର ଲୋକ ?
ସାଧୁ—(ବେଶ୍ ଫୁର୍ତ୍ତିରେ) ଅଜ୍ଞା ଅମେ ଦୁହେଁ ବାବୁଙ୍କ ପୁଷ୍ପାସ୍ପୃକର । ମୋ' ନାଁ ସାଧୁ—ତା'ନାଁ ସାଧୁ ।
ଦଗ—(ଏମାନଙ୍କ ବେଶ ପୋଷାକ ପ୍ରତି ଲକ୍ଷ୍ୟ ରଖି) ପୁଷ୍ପାସ୍ପୃ···କର !!
ସାଧୁ—ଅମେ ଦୁହେଁ ଟିକେ ଥେଟର ଦେଖି ବାହାରୁଛୁ । ଅ, ସାଧୁ ।
ଦଗ—ଉତ୍ତମ । କି ଥେଟର ଦେଖି ଯାଉଛ
ସାଧୁ—କି ଥେଟର କରେ ସାଧୁ ?
ସାଧୁ—ଶିଶୁପାଳ ବଧ ।
ଦଗ—କୋଉଠି ହଉଛି ?
ସାଧୁ—ବାଲିସାହି ବାହାରେ ଯେଉଁ ନୂଆ ଥେଟର ଟା ଖୋଲିଛି, ସେଇଠି ।
ଦଗ—ହୁଁ ।

ସାଧୁ—ଅ, ସାଧୁଅ'—ଡେର ହେଇ ଯାଉଚ ।

ସାଧୁ—ଛନ୍ଦମ ଖାଇନା ।···ଆଜ୍ଞା ଆପଣ······

ଦଗ—ଅଜକୁ ପଚଶ ବର୍ଷ ତଳେ ଏଇଠି, ଏଇ କଟକ ସହରରେ ମୁଁ ଥରେ ଥିଏଟର ଦେଖିଥିଲି—ପାରିଜାତ ହରଣ ! ଓଃ ! ସେ ଥିଏଟରର ଥାଟ୍ କ'ଣ—ବାଟ୍ କଣ !!

ସାଧୁ—ସତେ ଅଜ୍ଞା ! ଏମିତିକା ଥେଟର !!

ଦଗ—କାଇଁ କହୁଚ ? ଆଖି ଝଲସି ଯାଉ ଥାଏ-ମନ ଚହଲି ଯାଉଥାଏ ! କଲିକତା କାଳିମାଟିର ମୁଁ ଥିଏଟର ଦେଖିଚ—ହେଲେ ଏମିତିକା ଥିଏଟର !!

ମାଧୁ—ମୁଁବ କଲିକତା କାଳିମାଟିର ଥେଟର ଦେଖିଚ ଅଜ୍ଞା ।

ଦଗ—ଦେଖିଥିବ । ହେଲେ ସେ ଯୋଉଁ ଥିଏଟର-ପାରିଜାତ ହରଣ···

ସାଧୁ—ଶୁଣୁଚୁଟିର ସାଧୁ—ପାରିଜାତ ହରଣ !! ଇନ୍ଦ୍ର, ନାରଦ, ଶ୍ରୀକୃଷ୍ଣ ସମତେ ବାହାର ଥିବେ—ନାଇଁ ଅଜ୍ଞା ?

ସାଧୁ—ତମେ ରହିବଟି ଖାଇନା ! ଅଜ୍ଞା ଆପଣ ବାବୁଙ୍କୁ ଖୋଜୁଥିଲେ ପରା ?

ଦଗ—ବାବୁଙ୍କୁ ଖୋଜୁଥିଲି ଅଉ କ'ଣ ? ଗୋବର୍ଦ୍ଧନ ଘରେ ଅଛନ୍ତ କ ନାହିଁ, ପଚାରୁଥିଲି ।

ସାଧୁ—ସେ ଅଜ୍ଞା ଘରେ ନାହାନ୍ତି । ତାଙ୍କର ତେଣେ କୋଉଠି ମିଷ୍ଟି ହଉଚ-ଫେରୁ ଫେରୁ ରାତି ବାରଟା କି ଗୋଟାଏ ହବ ।

ଦଗ—ରାତି ପାହିଗଲେ ବି ଚିନ୍ତା ନାହିଁ । ଗଦା ଗଦା ଫାଇଲ୍ କାମ କରୁଚନ୍ତି—କେବେ କେମିତି ମଜ୍ଜା ମଜଲିସ୍ ନ କଲେ ଚଳିବ କେମିତି ?

ସାଧୁ—ଆଜ୍ଞା···ଆପଣ···?

ଦଗ—ମୁଁ ? ଅନେକ ଦିନ ତଳେ ମୁଁ ଏଠିକି ଆସିଥିଲି । ତୁମ ବୁଢ଼ୀଙ୍କୁ ତ ସେତେବେଳେ ଏଠି ଦେଖିନି ।

ସାଧୁ—ଆଜ୍ଞା, ମୋର ଏଠି ପାଞ୍ଚ ବର୍ଷ ହେଲା ··ସାଧୁର···ତିନି ବର୍ଷ ।

ଦଗ—ହଁ ! ଗୋବର୍ଦ୍ଧନ ସେତେବେଳେ ନୂଆ ବାହା ହୋଇ-ଥାଏ ।·· ହଁ, ବୋଧହୁଏ କାହାନ୍ତି—ବୋଧହୁଏ ?

ସାଧୁ—ବୋଧହୁଏ ??

ଦଗ—ହିସାବରେ ଗୋବର୍ଦ୍ଧନ ମୋର ପୁତୁରା ହବ—ମୁଁ ହେବି ପିଉସା—ବୁଝିଲ ?

ସାଧୁ—ଓ, ଆପଣ ମା'ଙ୍କ କଥା ପଚାରୁଛନ୍ତି ?···ମା, ଭିତରେ ଅଛନ୍ତି ।

ଦଗ—ଗୋବର୍ଦ୍ଧନର ହିଁକିଲି କ'ଣ ? ଝିଅଟିଏ—ପୁଅଟିଏ ପରା ?

ସାଧୁ—ହଁ ।

ଦଗ—କାହାନ୍ତି ସେ ଦିହେଁ ? କୋଉଠି ?

ସାଧୁ—ଏଇ ଆଜ୍ଞା, ! ଘେ ଘରେ । (ଡାକିଲା)ଇଛି ଦେଇ—ଛିକୁ ବାବୁ । (ଦୁହେଁଆସିଲେ) ।

ଦଗ—ଓ, ଏଇ ଦୁହେଁ ।

ସାଧୁ—ଆଜ୍ଞା ଆପଣ···?

ଦଗ—ବ୍ୟାଗଟି ନେଇ ରଖ । ସାଧୁ, ତମେ ଯାଇ ମା'ଙ୍କୁ ଖବର ଦିଅ—ଦିଗମ୍ବର···ତାଙ୍କ ଦିଗ ପିଉସା ଆସିଛନ୍ତି । ବୁଝିଲ ?

ସାଧୁ—ଆଜ୍ଞା । (ପ୍ରସ୍ଥାନ)

ଦଗ—କ'ଟେର ଇନ୍ଦ୍ର—ବିଜୁ । ମତେ ଚିହ୍ନି ପାରୁଚ ? ମୁଁ ତମର କଣେ କେକେ । (ବିଜୁ ଓ ଇନ୍ଦ୍ର ଦୁହେଁ ପ୍ରଣାମ କଲେ) ଆସ—ଆସ—ହେଇଚ ହେଇଚ । ବେଶ୍ ଭଲ ଦିନ ଦାଉଛି ହେଇଚ ଏକା ।

ରାଧୁ—ଆଜ୍ଞା ଏ ହେବ୍ ଠା ?

ସାଧୁ—(ଗମ୍ଭୀର ହୋଇ) ନେସନ୍ତ ଥାଳ ଉପରେ ରଖି ଦେଇ ତମ ମା'ଙ୍କୁ ଖବର ଦିଅ । ଏତିକି ବୁଦ୍ଧି ଦେଖା ଯାଉ ନାହିଁ ? ଆଉ ବୃହକୁ କଣ ? ଯା । (ସାଧୁ ଓ ପଛେ ପଛେ ବିଜୁର ପ୍ରସ୍ଥାନ) ଆରେ ବିଜୁ, ତୁ କୁଆଡ଼େ ପଳାଉଚୁ ? ବିଜୁ ! ଆସ, ସେ ଘର ଯାଉ । ହଁ ଇନ୍ଦ୍ର ! ତୋ ଖବର କଣ ? ବାପା ଆସନ୍ତୁ, ମୁ କହିବି, ପୂର୍ବ କାଳର ଗୌରୀ ଦାନ ପରି ଏବେବି ସେ ତୋତେ କନ୍ୟାଦାନ କରି ବାହା କରି ଦିଅନ୍ତୁ ।

ଇନ୍ଦ୍ର—ଯାଃ !

ଦଗ—ଆରେ, ଯାଃ କାହିଁକି ? ତୁ ଛୁଆଟିକେ ବୋଲି ବର ଅଭାବ ହେବେ ? ହେବେ ନାହିଁ । (ବଡ଼ ପାଟିରେ) ଆରେ ବିଜୁ—ତୋ ବୋଉକୁ କହିଦେ—ଇନ୍ଦ୍ର ପାଇଁ ତାଙ୍କୁ ଆଉ ବର ଖୋଜିବାକୁ ପଡ଼ିବ ନାହିଁ—ବରଠିକ୍ ହୋଇ ଗଲଣି ।...

[କଥା କହିବା ସଙ୍ଗେ ସଙ୍ଗେ ଦଗମ୍ବର ହୋଃ ହୋଃ ହୋଇ ହସୁ ଥାଆନ୍ତି । ବିଜୁ ପୁଣି ଆସିଲା ।]

ବିଜୁ—ଜେଜେ !

ଦଗ—କଣରେ ?

ବଜ୍ରୁ—ବୋଉ ତୁମକୁ ଚିହ୍ନି ପାରୁ ନାହିଁ ।
ଦଗ—(ହସି ଉଠି) ଚିହ୍ନିବେ କେମିତି ? ବଡ଼ ଲୋକ ହୋଇ
କଟକରେ ଘରଦ୍ୱାର କରି ରହିଲେ, ଆମକୁ ଆଉ ଚିହ୍ନିବେ
କାହିଁକି ? ଅଚ୍ଛା, ଅଚ୍ଛା, ବୋଉକୁ ଯାଇ କହ ଯେ, ମୁଁ
ହଉଛି ତୋ ବାପାଙ୍କ ପିଁସାଙ୍କର ଶଶୁରଙ୍କ ମାମୁଁ ପୁଅ ଭାଇର
ଜ୍ୱାଇଁଙ୍କ ମାଉସୀ ପୁଅ ଭାଇ । ସେହି ହିସାବରେ ମୁଁ ହେଲି
ତୋ ବାପାଙ୍କ 'ପିଁସା'—ବୁଝିଲୁ ?
ବଜ୍ରୁ—ହଁ ବୁଝିଲି ।
ଦଗ—ବେଶ୍, ତେବେ ବୋଉକୁ ଯା ଏ କଥା କହିଦବୁ ।
ବଜ୍ରୁ—ହଉ । (ବଜ୍ରୁ ଗୁଲଗଲା । ସଙ୍ଗେ ସଙ୍ଗେ ଗଧୁ ଆସିଲା)
ଗଧୁ—ଆଜ୍ଞା-
ଦଗ—କଣ କହୁଚୁ ?
ଗଧୁ—ଆଜ୍ଞା ବାବୁତ ଘରେ ନାହାନ୍ତି—
ଦଗ—ଏକଥା କଣ ଏତେବେଳେ ଯାଏ ମୁଁ ବୁଝି ପାରିନି ?
ଗଧୁ—ନାଇଁ ଅଜ୍ଞା, ବାବୁ ଘରେ ନାହାନ୍ତି--ଆପଣଙ୍କୁ ମା' ଠିକ୍
କରି ଚିହ୍ନି ପାରୁ ନାହାନ୍ତି--
ଦଗ—ଚିହ୍ନି ପାରୁଚନ୍ତି କି ନାହିଁ, ସେ କଥା ମତେ ନ ପଚାରି
ମା'ଙ୍କୁ ଯାଇ ପଚାର । (ଗଧୁର ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

[ ଅଳନ୍ଦ । କୁନ୍ତଳା ଯେପରି ଅପେକ୍ଷା କରି ଠିଆହୋଇଛନ୍ତି । ବଜ୍ର ଆସିଲା ]

ବଜ୍ର—ବୋଉ, ବୋଉ ।

କୁନ୍ତ—କିରେ, ସେ ଚିହ୍ନା ଦେଲେ ?

ବଜ୍ର—ହଁ, ସେ ପରି...

କୁନ୍ତ—କିଏ ସେ !

ବଜ୍ର—ସେ ପରି ବାପାଙ୍କ ପିଂସାଙ୍କର...ହ୍ୟାଡ୍ = କ'ଣ କହୁଥିଲେଟି ?

କୁନ୍ତ—କେଡ଼େ ନିର୍ବୁଦ୍ଧିଆ ପିଲାଟା ବା ! ? ପଦେକଥା ମନେ ରଖି ପାରୁନୁ ?

ବଜ୍ର—ପଦେକଥା ନୁହେଁ ମ ବୋଉ ! ପାଞ୍ଜି ଉପରେ ରଜାଙ୍କ ନାଁ ଯେମିତି ଲେଖା ହୋଇ ନାହିଁ ? ...ବୀର ଶ୍ରୀଗଜପତି ଗୌଡ଼େଶ୍ୱର ନବକୋଟି...

କୁନ୍ତ—ଚୁପ୍ । ଏଇଆ ମତେ କହିବାକୁ ଆଇଲୁ । ...ଏଇ, ଇନ୍ଦ୍ର ଆଇଲଣି । (ଇନ୍ଦ୍ର ଆସିଲା) ହଇରେ ଇନ୍ଦ୍ର—

ଇନ୍ଦ୍ର—ଶୁଣ୍ ମ ବୋଉ ! ଆମ ଦାଦା ଆଜି ଆମକୁ ଗଙ୍ଗ ବଂଶର ଇତିହାସ ପଢ଼ାଉଥିଲେ—ଭାରି କଟିମିଟିଆ । ...ତାକୁ ପଛେ ମନେ ରଖିହବ—ହେଲେ, ଏ ଜେଜେ ତାଙ୍କର ଯୋଉ ଚିହ୍ନାଦେଲେ ନା...ଓଡ଼ନନ୍ଦନ ଘୋଷିଲେ ବି ମନେ ରହିବ ନାହିଁ ।

କୁନ୍ତ—ଏ ଦିନ ଦ'ଟା କ'ଣ ଏମିତ ପାଗଲଙ୍କ ପରି କହୁଚ ।
ସିଏ କହୁଚ ପାଞ୍ଚ ଇଏ କହୁଚ ଇତିହାସ । (ରାଧୁ ଆସିଚ)
ହାଇରେ ରାଧୁ ?

ରାଧୁ—ହଁ ଏରା ମା—ଏମିତ ଲୋକ ମୁଁ କୋଉଠି ଦେଖି ନାହିଁ ।
ବାବୁଙ୍କ ନିଜ ହିସାବର ଶ୍ୱଶୁରଙ୍କ ଅଙ୍କର ଅଙ୍କ ବୋଲି
ପାଏ ଲମ୍ବର ହିସାବ ଯୋଖି ଶେଷକୁ ଠକ୍ କରି ହିସାବ
ଛୁଣ୍ଡେଇ ଦେଲେ ଯେ ହିସାବରେ ସେ ହଉଛନ୍ତି ବାବୁଙ୍କର
ପିଇ ସା...!!···

କୁନ୍ତ—ଇଏତ ଆଉ ପାଢ଼ିହବା କଥାନୁହେଁ ! ଲେଖା ଯୋଖାରେ
କୋଇ ସାତ ବନ୍ଧୁରେ ବନ୍ଧୁ···ସିଏ ଆସି ଏମିତ ଅସ୍ଥାନ
ମାଡ଼ ବସିଲେଣି । ଏଇନେ କ'ଣ କରୁଚନ୍ତି ?

ରାଧୁ—ବାବୁଙ୍କ ଆରାମ ଚଉକି ଉପରେ ବସି ବହି ଖଣ୍ଡେ
ପଢୁଚନ୍ତି ନା କ'ଣ ! ଭାଇନା ସେଠି ଅଛୁ ।

କୁନ୍ତ—ସେଇଟା ହାଉଡ଼ା ଝାଏ—କଣ ନାହିଁ କଣ କହିବ । ତୁ
ଯା ଦେଖ ।



## ତୃତୀୟ ଦୃଶ୍ୟ

[ ପ୍ରଥମ ଦୃଶ୍ୟର ଘର । ସାଧୁ ଓ ଦଗମ୍ବର ଅଛନ୍ତି ]

ସାଧୁ—ହଁ ଆଜ୍ଞା, ଆଜି ଆମ ସମସ୍ତଙ୍କର ଛୁଟି ।

ଦଗ—ଛୁଟି ! ଛୁଟି କ'ଣ ହେ ? ଏ ପରିବାର·ଘର·ସଂସାର କାରବାରରେ ପୁଣି ଛୁଟି ଥାଏ ନା କ'ଣ ?

ସାଧୁ—ଥାଉ କି ନ ଥାଉ, ଆଜି ହେଇଚି ଆଜ୍ଞା । ବାବୁ ତେଣେ ପିଷ୍ଟ ଖାଉଚନ୍ତି-ମା'ଙ୍କର ସୂତା ଖିଅ ନାହିଁ, ମାଷ୍ଟର ଘରକୁ ଯାଇଚନ୍ତି-ଆମ ସମସ୍ତଙ୍କର ଛୁଟି । ଝିଅ ଦୁହେଁ ଖେଳୁଚନ୍ତି-ମା ରାମାୟଣ ପଢ଼ିବେ—ଆମେ ଦୁହେଁ ଥେଟର ଯିବୁ ।

(ଖୁବ୍ ମନ ଫୁର୍ତ୍ତିରେ ସାଧୁ କଥା କହି ଚାଲିଥାଏ । ରାଧୁ ଆସିଲା । )

ରାଧୁ—କ'ଣ ଏଠି ଗପୁଚ ଭାଇନା—ତେଣେ ଯା, ମା ଡାକୁଚନ୍ତି ।

ସାଧୁ—ତେଣେ ଯିବ କୁଆଡ଼େ ? ଆମେ ଲୋଗ ଏଣେ ଥେଟର ଦେଖି ଯିବା ।

ଦଗ—ଗୋବର୍ଦ୍ଧନର ଏଇଟା ନିଜ ଘର ନା [illegible]ଠାଘର ? ରୋଷେଇ ଘରେ ତାଳ ପକେଇ ପୁଅଝିଅ ଚାକର ଥେଟର ଦେଖି ଯାଉଚନ୍ତି !!

ରାଧୁ—ଆଜ୍ଞା !

ଦଗ—କ'ଣ କହୁଚ ?

ରାଧୁ—ବାବୁଙ୍କ ପାଖରେ ଆପଣଙ୍କର କ'ଣ କାମ ଅଛି ?

ଦଗ—କାହିଁକି-ଏ କଥା ପଚାରୁଚ କାହିଁକି ?

ସାଧୁ—ବାବୁଙ୍କର ଫେରିବାକୁ ବହୁତ ଡେରି ହବନା···

ଦଗ—ସେ କଥା ତ ମୁଁ ଏଠିକି ଆସିଲା ବେଳଠୁ ଅନେକ ଥର ଶୁଣିଲଣି ।

ସାଧୁ—ଯଦି କାମ କରୁ ନ ଥାଏ, ତେବେ କଣ ଏତେ ରାତି ଯାଏ ଏଠି ବସିବେ ?

ଦଗ—ଏଁ !! ଓଃ ହୋ ହୋ···ଏ ଚଉକାଠରେ ଏତେ ଛାରପୋକ ଅଛନ୍ତି !! (ଡ଼ିଠି ପଡ଼ିଲେ । କିନ୍ତୁ ଛାରପୋକ କଥାଟା ଏକା ବେଳକେ ଛାଡ଼ନ୍ତି ନାହିଁ)

ସାଧୁ—ଆଜ୍ଞା, ଖାଲି କ'ଣ ଛାରପୋକ ! ଏ ଘରେ ଛାରପୋକ ମଶା, ଅସରପା, ସବୁ ଭର୍ତ୍ତି । ଏଇ ମାସକତଳେ ପରା ମୁଁ ଟୋକେଇଏ ଅସରପା ନେଇ କାଠଯୋଡ଼ି ନଈରେ ଭସେଇ ଦେଇ ଆସିଛି ।

ଦଗ—ଭଲ କରିଛ । ହେଲେ ଏ ଛାରପୋକ ଗୁଡ଼ିକ ବଞ୍ଚେଇ ରଖିଛ କାହିଁକି ?··· ଆଚ୍ଛା, ପୁଷ୍ପାଗ୍ରୀ, ତମେ ଯାଇ ଡେକ୍‌ଚିଏ ପାଣି ଗରମ କରି ଆଣ !

ସାଧୁ—ଆଜ୍ଞା ଆଜି ପରା ଆମର ଛୁଟି, ଚୁଲି ଜଳିବ ନାହିଁ ।

ଦଗ—ନା—ନା—ପାଣି ଗରମ କରିବାକୁ ହବ । ମୁଁ ଆଜି ଏ ଛାରପୋକ ବଂଶ ନିପାତ କରିବି ।

ସାଧୁ—ଏ ଚୌକୀରେ ତ ସେମିତି ଛାରପୋକ ନାହାନ୍ତି ଆଜ୍ଞା—କୋଡ଼ିଏ ଗୋଟାଏ ଅଧେ—

ସାଧୁ— (ଜୋର୍ ଗଳାରେ) ତୁ ଗଣିଚୁ ? ଗୋଟାଏ ଅଧେ ଅଛନ୍ତି ?

ସାଧୁ—ନାହିଁ, ତେବେ ଗଣିଚି—ପଣ କାହାଣ ସଂଖ୍ୟାରେ ଅଛନ୍ତି !!

ସାଧୁ—ଆରେ ବାବୁ ନିଜେ ଚୌକି ଉପରେ ବସି ଏକଥା କହୁଚନ୍ତି ।

ଗଧୁ—ସ୍ୱା' ବୋଲି ନିଜେ କାହିଁକି କଷ୍ଟ କରି ···

ଦଗ—ଓହୋ ! ନିଜଲୋକ ହୋଇ ଏତିକ ନ କଲେ ଆଉ କଲି କ'ଣ ? ଯାଅ, ଝୋଲ ଚୁଲି ଲଗାଅ । ··· ଏଇ, ସେ ଥାକ ଉପରେ କ'ଣ ଥୁଆ ହୋଇଚି ?

ଗଧୁ—ସେଇଠା ? ··· (ଜାଣି ନଜାଣିଲି ପରି) ସେଇଟା ଦିଲିଙ୍କର ଗୋଟାଏ ଖେଳ ଜିନିଷ ନା କ'ଣ ?

ଦଗ—ଖେଳ ଜିନିଷ ??

ସାଧୁ—ହଇରେ ଗଧୁ—ଏମିତି ନ ଜାଣିଲି ଭଳେ କ'ଣ କହୁଚୁ ବା ? ତୁ ପରା ଅଜି ନିଜେ ବଜାରରୁ କିଣି ଆଣିଚୁ—ବାବୁଙ୍କ ଗୃ' ପୁଡ଼ିଆ ।

ଦଗ—ଗୃ' ପୁଡିଆ ! କି ଗୃ'—ଗୁଣ୍ଡ ନା ପତ୍ର ?

ସାଧୁ—ପତ୍ର ଆଜ୍ଞା । ··· ଏଇ ଦେଖୁନାହାନ୍ତି—··· ଦେଖନ୍ତୁ । (ଗୃ' ପୁଡ଼ିଆଟା ନେଇ ଆସିଲି) ବାବୁ ଆମର ଗୁଣ୍ଡ ଗୃ' ଛୁଅନ୍ତି ନାହିଁ ।

ଦଗ—ଠିକ୍ ମୋରି କଥା—ମୋରି ଅଭ୍ୟା ଗୋବର୍ଦ୍ଧନର । ଗୁଣ୍ଡ ଗୃ' ମୋର ବିଷ । ଏଇ, ଆସିଲବେଳେ ଯୋଉ ହୋଟେଲକୁ ଗଲି—ଗୁଣ୍ଡ ଗୃ' । ଛୁଇଁଲି ନାହିଁ । ଗୁଣ୍ଡ ଗୃ' ପୁଣି ମଣିଷ ଖାଏ ! ଏତେବେଳେ ଯାଏ ମୋର ଗୃ' ଖିଆ ହୋଇ ନାହିଁ । ହଁ, ପୁଣ୍ଡାଘା, ବାବୁ ତମର କ'ଣ ଦି' ବେଳା ଗୃ' ଖାନ୍ତି ?

ଗଧୁ—ବାବୁଙ୍କର ସେମିତି କିଛି ବେଳ ଅବେଳ ନ ଥାଏ ।

ସାଧୁ—କିଏ କହିଲା ବା ! ବାବୁଙ୍କର ଆମର ଦି' ବେଳା ଟଗବନ୍ଧା ଗୃ' ଖିଆ । ହେଲେ ଖାଲି ପେଟରେ ନୁହେଁ—

ଟିକିଏ ହେଲେ କଣ ପାଟିରେ ପକେଇ ଦେଇ ଚା’ ଖାଇବେ ।

ଦଗ--ଏକାବେଳକେ ମିଳି ଯାଉଚି !! ଗୋବର୍ଦ୍ଧନର ଯୋଉ ସ୍ୱାନ୍ତ--ମୋର ବି ସେଇ ସ୍ୱାନ୍ତ । ଖାଲି ପେଟରେ ପୁଣି ମଣିଷ ଚା’ ଖାଏ ! ··· ହଁ, ପୁଷ୍ପାସ୍ୱ, ଠିଆ ହେଲି କାହିଁକି ? ଯାଅ ! ଚୁଲି ଲଗେଇ ପାଣି ଗରମ କର । ଆଉ ପାଣି ଯେତେବେଳେ ଗରମ କରୁଚ--ଚା’ ଟିକିଏ କରିଦିଅ ।

ସ୍ୱାଧୁ—ଚା’ କେମିତି ହବ ଅଜ୍ଞା, ଘରେ ତ ଦୁଧ ନାହିଁ ।

ଦଗ—(ହସି ହସି) ଆରେ ଦୁଧ ଆଜିକାଲି ମିଳୁଚି କୋଉଠି— ଖାଉଚି କିଏ ? ମୋର ସେଇ ନାଲି ଚା’ ଚଳିବ ।···ହେଲେ ଖାଲି ପେଟରେ ?···ନା-ନା !! ଗୋବର୍ଦ୍ଧନକୁ ଡେକେଇ ଦବାକୁ ହବ । (ବଡ଼ ପାଟିରେ) ଆରେ ବଳୁ, ତୋ’ ବୋଉକୁ କହିଦେ—ମୋ’ ବାପା କୁଆଡ଼େ ଏଣୁ ତେଣୁ ଟିକିଏ କଣ ପାଟିରେ ପକେଇ ଦେଇ ଚା’ ଖାଏ, ସେଇଠା ମୋତେ ଉଚିତ ନୁହେଁ । ଭଲ କରି ଜଳଖିଆ ଖାଇ ତା’ପରେ ଚା’ ଖାଇବ । (ଦୁଆର ମୁହଁ ପର୍ଯ୍ୟନ୍ତ ଯାଇ ସେମିତି ବଡ଼ ପାଟିରେ କହୁଥାନ୍ତି )·· ହଁ, ତୋ’ ବୋଉ ପୁଣି ମତେ ଚିହ୍ନିଲା ନା ନାହିଁ ?··· ବୋଉକୁ କହିଦେ—ଆମ ଘର ବାଲିସାହି—ବାଲିସାହିର ଦଗ ପି’ସା—ବୁଝିଲୁ ! ହଁ ଆଜି ତମ ମାଷ୍ଟ୍ରେ ଆସି ନାହାନ୍ତି ବୋଲି ତମ ଦୁହିଙ୍କର ଛୁଟି ବୋଲି ଶୁଣିଲି । ଆରେ ପାଠ ପଢୁଆ ପିଲାଙ୍କର ଗୋଟାଏ ଛୁଟି କ’ଣ ? ତେମେ ଦିହେଁ ଏଠିକି ଆସ—ମୁଁ ତମକୁ ପଢ଼େଇବି, ଆସ । ଗୋବର୍ଦ୍ଧନ ଆସିଲେ କହିବ କଣ ?···କହିବ—ପି’ସା ଥାଉ ଥାଉ ପିଲା ଦିଟା ପାଠ ନ ପଢ଼ି ଖେଳିଲେ···!! ଆସ-ମୁଁ ପଢ଼େଇବି, ଆସ ।

---

## ଶେଷଦୃଶ୍ୟ

ଅଳନ୍ଦ

ରାଧୁ—ଦେଖିଲେ ତ ମା ?

କୁନ୍ତ—ଏତେବେଳେକେ ମୁଁ ତାଙ୍କୁ ଚହ୍ନିଲିରେ ରାଧୁ ।···ତାଙ୍କ ଢଙ୍ଗ ଏମିତ । ଟରେ ଯାହା ଘରକୁ ଗିବେ—ପନ୍ଦର ଦନ କଟ୍‌ରେ ସେଠୁ ବାହାରିବେ ନାହିଁ । ଆଉ ଦନେ କୁଆଡ଼େ ଏଟିକି ଆସିଥିଲେ ଯେ--ଇଏ ବାହାରୁ ବାହାରୁ ତାଙ୍କୁ ଫେରେଇ ଦେଇଥିଲେ । ଆଜ ଇଏ ଘରେ ନାହାନ୍ତି ବୋଲି ଏ ଦଶା ।

ରାଧୁ—ଏଇ ଭଉନା ସକାଳେ ଏତେ କଥା ! ମୁଣ୍ଡରେ ଟିକଏ ବୁଦ୍ଧି ନାହିଁ ।

ସାଧୁ—ମୁଁ କଣ କଲି ? ମୋର ତ ଟେଝର ଦେଖା ଟୁଲିକ ଗଲି ।

କୁନ୍ତ—କାହାର କୋଉ କାମଠା ହେଲକ ? ଏଇ ପରା ବହୁଖଣ୍ଡିକ ମୁଁ ହାତରେ ଧର ବୁଲୁଚ ।···ଦୁଷ୍ଟାପ୍ତ, ଇତ ବଡ଼ୁଙ୍କ ପାଇଁ ଯୋଉ ଜଳଖିଆ ଥିଲା, ତାକୁତ ନେଇ ତାଙ୍କୁ ଦେଲ— ଇତ ବଡ଼ୁ ଖାଇବେ କଣ ? ପାଞ୍ଚୁରୁଟି ଖାଇ ରହିବେ !

ସାଧୁ—ମୁଁ ଆଉ କଣ କରିବ ମା ?

ରାଧୁ—ସେତେବେଳେ କେମିତ କହୁ ଦଉଥେଲ—ଅଗ୍ରମ ଚୌକରେ ସ୍ଥରପୋକ ଭର୍ତ୍ତି ହୋଇଚନ୍ତି—ବାବୁଙ୍କ ପାଇଁ ପଡ ଗୃ କଣା ହେଇଚ—

ସାଧୁ—ଓଃ, ତୁ ମୋ ସାଥିରେ ଲଗାନା—ମୋ ଅଣ୍ଟା ପୁଣି ଚନ୍ ଚନ୍ ହେଲାଣି ।

କୁନ୍ତ—ଦେଖିଲ୍, ଦେଖିଲ୍ ସାଧୁ ଚା ଖାଇ ସାରିଲେଣି ନା କଣ ?

ସାଧୁ—ହଁ ମା, ଯାଇ ଦେଖେ—ଏଇ ଚା କଳଶିଅଛୁ ଯଦ ବିଦା କର ହବ !!

(ସାଧୁ ଯିବା ପୂର୍ବରୁ ଦଗମ୍ବର ଆସିଲେ । କୁନ୍ତଳା ଭିତରକୁ ଚାଲିଗଲେ)

ଦଗ—କିଏ ? ସାଧୁ ।

ସାଧୁ—ଅଜ୍ଞା—ଚା ଖାଇ ସାରିଲେଣି ।

ଦଗ—ହଁ—ମୁଁ ଟିକିଏ ଓକଲ ଘରକୁ ଯିବ । ମୋ ବ୍ୟାଗ୍‌ଟା କାହିଁ ?

ସାଧୁ—ବ୍ୟାଗ୍ ! ଚାଲନ୍ତୁ ଅଜ୍ଞା—ଚାଲନ୍ତୁ-ରାସ୍ତା ଯାଏ ମୁଁ ନେଇ-ଯାଉଛ. ଚାଲନ୍ତୁ । (ବ୍ୟାଗ୍‌ଟା ଆଣିଲା)

ଦଗ—ଅ୍ରେ ନା. ମୁଁ କଣ ବ୍ୟାଗ୍‌ଟା ନେବ ? ବ୍ୟାଗରୁ କାଗଜ ଦ'ଖଣ୍ଡ ନେବ । ହଁ ନେ, ବ୍ୟାଗଟା ପୁଣି ସେଠି ରଖି ଦେ । ହଁ ,ମୁଁ ଯାଉଚ—ଫେରୁ ଫେରୁ ଟିକିଏ ଡେରି ହବ । ହୁଏତ ଏଗାରଟା ।··ଅରେ ବଜ୍ଜୁ—ବୋଉକୁ କହିଦେ—ମୁଁ କୁଣିଆ ଘର ଅଇଚ ବୋଲି ମୋ ପାଇଁ ପିଠା ପଣା କରିବା ଦରକାର ନାହିଁ, ଜସୁନା ଘିଅ ଦ ଟା ମଟର ପୋଷାଏ ।···ହଁ ଆଜ ସୋମବାର ବୋଲି ମୋର ନରାମିଷ ନୁହେଁ—ମୋର ସବୁ ବାରରେ ଆମିଷ ଚଳେ ବୁଝିଲ୍ । ବୋଉକୁ କହିଦେ ମୁଁ ଯାଉଚ ।

(ପ୍ରସ୍ଥାନ । କୁନ୍ତଳା ଆସିଲେ)

କୁନ୍ତ—ଆଉ ଠିଆ ହେଲ କାହୁଁକି ସାଧୁ, ଯାଅ, ଚୂଲି ଲଗାଅ ।

ସାଧୁ—ନ ଲଗେଇ ଆଉ ଯିବ କୁଆଡ଼େ ମା ?…ବାଇଛା ଅଣ୍ଡାଯାଏ ଏକାବେଳକେ ଭିଡ଼ ଦେଲଣି ଉଠି ହଉ ନାଇଁ ।

ସାଧୁ—ଥୋଡ଼ର ଦେଖି ଯିବ ନାଇଁ ?

ସାଧୁ—କାଇଁ ଗୋଟାଏ ସେମିତି ହଉଚୁ ବା ?

ସାଧୁ—ସବୁ କଥା ତ ଭଲୁ କଲ—ଏଇନେ ପଛଉଚ କାଇଁକି ? ଯାଅ, ତାଙ୍କର ତ ସୋମବାର ଆଇଁଷ ଚଳେ—ତେବେ ସେଇ ବ୍ରେଟେଇ ଘରେ ଶିଶୁପାଳ ବଧ କର—ମୁଁ ଏଣେ ମାଗୁର ମାଛ ବଧ କରୁଚ ।…ନା, କଣ କଉଚ ମା' ମାଛ ମାଡ଼ିବନି ?

କୁନ୍ତ—ହଁ, ସିଏ ପରା ମୂହଁ ଫିଟେଇ କହୁ ଚାଲେଣି—ନ ମାରବୁ କେମିତି ? ମୁଁ ଯାଏଁ—ତେଲ ମସଲ ଆଣେ—ତେଣିକି ସିଏ ତାଙ୍କର କ୍ଲବ୍‌ରୁ ଫେରି ଯାହା ବୁଝିବାର ବୁଝିବେ ।

---

## ଏ ନାଟକରେ ଅଛନ୍ତି :

ଗୋବର୍ଦ୍ଧନ ବାବୁ—ଗୃହସ୍ୱାମୀ

କୁନ୍ତଳା—ତାଙ୍କ ସ୍ତ୍ରୀ

ଇତି—ତାଙ୍କ ଝିଅ

ବିଜୁ—ତାଙ୍କ ପୁଅ

ସାଧୁ—ତାଙ୍କ ପୁତୁରା

ଓ

ଜଣେ ସ୍ଥାନୀୟ ଦୋକାନୀ

# ଚତୁର୍ଥ ଚିତ୍ର

## ପ୍ରଥମ ଦୃଶ୍ୟ

[ ସମୟ ଅପରାହ୍ଣ । ଗୋବର୍ଦ୍ଧନ ବାବୁ ଅଫିସରୁ ଫେରିଲେ ]

କୁନ୍ତଳା—ଆଜି କ'ଣ ଏତେ ବେଳାବେଳି ଅଫିସରୁ ଫେରିଲଣି ?

ଗୋବର୍ଦ୍ଧନ—ବେଳାବେଳି ଆଉ କଣ ? ଏଇତ ସାଢ଼େ ପାଞ୍ଚଟା ବାଜିଲଣି । ଅଫିସ୍ ତ ପାଞ୍ଚଟାରେ ବନ୍ଦ ।

କୁନ୍ତଳା—ଆଜି ନୂଆ କଥାଟେ ଏ ଶୁଣିଲି । ସବୁ ଦିନେ ତ ଅଫିସ୍ ପାଞ୍ଚଟାରେ ବନ୍ଦ ; ହେଲେ ସାତଟା ଏପାଖରେ କେବେ ବାବୁଙ୍କ ମୁଖ ଚନ୍ଦ୍ରମା ଦେଖିବାକୁ ମିଳେନା ।

( 'ମୁଖ ଚନ୍ଦ୍ରମା" କଥାଟା ଶୁଣି ଗୋବର୍ଦ୍ଧନ ବାବୁ ମନେ ମନେ ଆମୋଦ ଅନୁଭବ କଲେ)

ଗୋବ—ହୁଁ ! ଆଜି ପାଞ୍ଚଟା ବେଳେ ହଠାତ୍ ଫାଇଲ୍ ଉପରୁ ମୁହଁଟା ଉଠେଇ ଦେଖିଲି—ସୂର୍ଯ୍ୟ ଅସ୍ତ ଯାଉଚନ୍ତି । ହୁଟ୍ ପୁରୁଣା ଦିନରେ ଗୋଟାଏ କଥା ମନେ ପଡ଼ିଲା ।

କୁନ୍ତଳା—ଆଗେ ଜାମାଟା ଖୋଲି ମୋ ହାତକୁ ଦେଇ କୁହ କ' କଥା ?

ଗୋବ—ଠିକ୍ ଏମିତିକା ଶେଷ—ହେମନ୍ତର ଏକ ଧୂସର ଗୋଧୂଳି···

(ଗୋବର୍ଦ୍ଧନଙ୍କ କବିତ୍ୱରେ କୁନ୍ତଳା ଯେପରି ପ୍ରମାଦ ଗଣିଲେ)

କୁନ୍ତଳା – କ ଅ ଣ ହେଲ !!

ଗୋବ—ପଶ୍ଚିମ ଦଗ୍-ବଳୟରେ ସୂର୍ଯ୍ୟ ଅସ୍ତ ଯାଉଥାନ୍ତି । ଆକାଶର କୋଣେ କୋଣେ ସୁନେଲ ରଙ୍ଗର ସମାରୋହ । ସେଇ ରଙ୍ଗ ସୁଷମାରୁ କଣିକାଏ ଛୁଟିକ ଆସି ପଡ଼ୁଥାଏ ମୋହିଏ ସ୍ନିଗ୍ଧ ସପ୍ତଦଶୀ ବାଳିକା ଶଧୁର ମୁହଁ ଉପରେ । ଅପୂର୍ବ ସେ ଦୃଶ୍ୟ ।

କୁନ୍ତଳା—ହେ...ଇ !!

ଗୋବ—ତମେ କଣ କୁନ୍ତଳା, ସେଇ ସ୍ନିଗ୍ଧ ବାଳିକାଟି କିଏ ?

କୁନ୍ତଳା—ଏଁ !!!

ଗୋବ— ଜାଣ ନାହିଁ ତମେ ?

କୁନ୍ତଳା—(ଲାଜେଇ) କିଏ ସେ ?

ଗୋବ—ତମେ !!

କୁନ୍ତଳା—କଣ ଆଉ କହୁଛନ୍ତି !!

ଗୋବ—ଆଜି ସେଇ କଥା ମନେ ପଡ଼ିବାରୁ ଭାବିଲି, ସେଇ ସୂର୍ଯ୍ୟତ ଅଛି—ସେଇ ରଙ୍ଗତ ଅଛି—ଯାଏଁ ଦେଖେଁ, ସତାଇଶି ବର୍ଷ ବୟସ୍କା ଦୁଇଟି ସନ୍ତାନର ମା କୁନ୍ତଳାର ମୁହଁ ଉପରେ ଆଜି ସେ ରଙ୍ଗର ଶୋଭା...(କୁନ୍ତଳା ଚାଲି ଯାଉଥିଲେ ) ହେ କୁନ୍ତଳା, ଯାଅନାହିଁ, ଶୁଣ । (କୁନ୍ତଳା ଫେରିଲେ)

କୁନ୍ତଳା—ଶୁଣିବା କଥା ତମେ ଆଉ କହୁନ ।

ଗୋବ—ନଶୁଣିବା କଥା ଆରମ୍ଭ କଲା କିଏ ? ବାବୁତ ଅଫିସ୍‌ରୁ ଆସିଲେ ! ତାଙ୍କର ଅଫିସ୍ ଫେରନ୍ତା ଧୂଳି ଧୂସର ଆ ମୁହଁଟା କାହିଁକି ତମ ଆଖିରେ ଚନ୍ଦ୍ରମା ରୂପ ଧାରଣ କଲା ? କହିଲେ କ'ଣ ନା—ମୁଖ—ଚନ୍ଦ୍ରମା !!

କୁନ୍ତଳା—ଓ ! ମୋର ଏ ପଦେ କଥାକୁ ଉତ୍ତର କରି ତୁମେ ଆଉ ସମ୍ଭାଳି ହେଲ ନାହିଁ ! ଏକା ବେଳେକେ ସୁଅ ଫିଟିଗଲା—ଫିଟିଗଲା ।

ଗୋବ—(ଟିକିଏ ନମ୍ରସ୍ୱରରେ) ବୁଝିଲ କୁନ୍ତଳା, ସେ ବୟସରେ ସୁଯୋଗ ଆସି ଆମ ଦେହରେ ଧକ୍କା ଖାଉଥିଲା । ବର୍ତ୍ତମାନ ସୁଯୋଗର ସ୍ୱର୍ଗଦ୍ୱାର ହେଲାଣି । ଯଦି କେତେବେଳେ ଟିକିଏ ମିଳିଗଲାତ—

କୁନ୍ତ—ହଉଥାଉ, ଗୋଡ଼ହାତ ଧୋଇବ ଆସ ।

ଗୋବ—(ଈଷତ୍ ଦୀର୍ଘଶ୍ୱାସ) ଚାଲ ।...(ଡାକିଲେ) ସାଧୁ,

କୁନ୍ତ—ସାଧୁକୁ ଛୁଟି ଦେଲି—ସେ ଘରକୁ ଗଲା—ଆଉ ପୁଣି 'ସାଧୁ' କ'ଣ ?

ଗୋବ—ଓ, ସାଧୁ ତାହେଲେ ଆଜି ଗଲା । କେବେ ଫେରିବ ?

କୁନ୍ତ—ଛ' ସାତଦିନ ପରେ ଆସିବ ବୋଲିତ କହି ଯାଇଛି ।

(ବଡ଼ ପାଟିରେ) ପୁଷ୍ପାଞ୍ଜ—ପୁଷ୍ପାଞ୍ଜ !

(ଗୋବର୍ଦ୍ଧନ ମୁହଁହାତ ଧୋଇ ଆସିଲେ)

ସାଧୁ—(ଦୂରରୁ) କଣ କହୁଚ ମା ?

କୁନ୍ତ—ବାବୁଙ୍କ ପାଇଁ ଜଳଖିଆ ଆଣ ।

ଗୋବ—ନାହିଁ କୁନ୍ତଳା, ମୁଁ ଏଇନେ ଜଳଖିଆ ଖାଇବି ନାହିଁ, ଖାଲି ଚା' ଆଣିବାକୁ କହ ।

କୁନ୍ତ—ବଡପାଟିରେ) ଜଳଖିଆ ଥାଉ ପୁଷ୍ପାଞ୍ଜ, ଖାଲି ଚା' ଆଣ ।

ଗୋବ—ବନ୍ଧୁ ଇତଙ୍କର ପରୀକ୍ଷା ଆଜି ସରିଲା ?

କୁନ୍ତ—ହଁ ।

ଗୋବ—ଦୁହିଁଙ୍କର ସରିଗଲା ?

କୁନ୍ତ—ହଁ ।

ଗୋବ—ରକ୍ଷା ।

କୁନ୍ତ—କ'ଣ ରକ୍ଷା ?

ଗୋବ—ତାଙ୍କ ମାଷ୍ଟ୍ରେ ଆଜ ଖଣ୍ଡେ ଚିଠି ଲେଖି ପଠେଇ ଦେଇଚନ୍ତି, ଏ କେଇ ଦିନ କ'ଣ ତାଙ୍କର ଅସୁବିଧା ଅଛି ବୋଲି ସେ ଆସି ପାରିବେ ନାହିଁ ।

କୁନ୍ତ—ଏଇଥିପାଇଁ ତମେ କହୁଦେଲ "ରକ୍ଷା" ।

ଗୋବ—ପରୀକ୍ଷାଟା ଯେତେବେଳେ ସରି ଯାଇଚି, ମଣିଷ ଟିକଏ ନିଶ୍ଚିନ୍ତ ହେବନି ?

କୁନ୍ତ—ମୋଟେ ନୁହେଁ । ମୁହଁ ଛିଙ୍କ ପାଇଁବ ନୁହେଁ । ପରୀକ୍ଷା ଚାଲିଥିଲା—ସିଏ ତାଙ୍କର ପଢ଼ାପଢ଼ି କରୁଥିଲେ—ମଣିଷ ଟିକଏ ଏଣେ ନିଶ୍ଚିନ୍ତ ହୋଇ କାମଦାମ କରୁଥିଲା । ପରୀକ୍ଷା ତ ସରିଲା—ଏଣିକି ଆଉ ପଢ଼ାପଢ଼ିର ନା ଧରିବେ ନାହିଁ ।

ଗୋବ—କି ଆଶ୍ଚର୍ଯ୍ୟ କଥା ! ପରୀକ୍ଷା ସରିଲା—ଆଉ ପଢ଼ିବେ କଣ ?

କୁନ୍ତ—ପଢ଼ିବେ ତ ନାହିଁ ଏଣେ ଘରଟାସାରା ପକେଇବେ ଉଠେଇବେ । ଆଜ ଦିନ ଦ'ଟା ବେଳୁ ଇସ୍କୁଲରୁ ଆସି ଏପାଏଁ କେଇ ନମ୍ବର ମକଦ୍ଦମା କରିଚନ୍ତି ତାଙ୍କୁ ଡାକ ପଚାର ।

ଗୋବ—କାହିଁଗଲେ ସେ ?

କୁନ୍ତ—କେଜାଣି କୁଆଡ଼େ ଗଲେ ? ସାଧୁ ଙ୍କୁ ଆଣିଲେ ନା ନାହିଁମ ?

ସାଧୁ—ଆଣିଲଣି ପରା ମା । (ଙ୍କୁ' ସଙ୍ଗ ସାଧୁର ପ୍ରବେଶ)

ଗୋବ —କ'ଣ ସାଧୁ, ତମ ଦେହ ଆଜ ଭଲ ନାହିଁକି ? କଣ ହେଇଚି ?

ସାଧୁ—କିଛି ନାହିଁ ବାବୁ ଭଲ ଅଛି ।

ଗୋବ—ଆଉ ମୁହଁଟା ଏମିତି ଶୁଖେଇଚ କାହିଁକି ?

ସାଧୁ—ନାଇଁ ବାବୁ, କଳ ଏଇନେ ବନ୍ଦ ହେଇଯିବ—ସୁରେଇ
ଡନାଟା ଖାଲି ପଡ଼ିଛି । ବଜାରରୁ ସଉଦାପତ୍ର କରୁଁ ଅଛି ନାଇଁ ।
ଗୋବ—ଇଏତ, ନୂତନ ଲୋକଙ୍କ କାମ । ସବୁଦିନେ ହଉଥିଲା—
ଆଜି ହବ । ତେମେ ଏମିତି ମୁହଁ ଶୁଖେଇ, ଗୁଁ ଗୁଁ କାହିଁକି
ହଉଛ ?
ସାଧୁ—ନାଇଁ ବାବୁ—ଗୁଁ ଗୁଁ କାହିଁକି ହେବ ? କାମ କୋଉଦିନ
ନ ହେଇ ରହିଲାଣି ନା, ଆଜି ରହିବ ? ମୁଁ ଯାଉଛି ମା,
ସୁରେଇରେ ପାଣି ଭରିଦେଇ ବଜାରକୁ ଯିବି ।
କୁନ୍ତଳା—ହଁ ଯାଅ । ତାଲିକା, ପଇସା ସବୁ ରଖିଲ ତ ?
ସାଧୁ—ହଁ, ରଖିଛି ।
କୁନ୍ତଳା—ହଉ ଯାଅ ।
ସାଧୁ—ମତ୍ସ ଅଗଣାଟା ଅଖରକା ପଡ଼ିଲା ।
କୁନ୍ତଳା—ମୁଁ ଝେରକ ଦଉଛି । ତେମେ ଯାଅ । (ସାଧୁର ପ୍ରସ୍ଥାନ)
ଗୋବ—ସାଧୁ କାମଟକ ଯା' ମୁଣ୍ଡରେ ପଡ଼ିଛି ବୋଲି, ଇଏ
ଏମିତି ହଉଛି ।
କୁନ୍ତଳା—ହୁଣ୍ଡାଟା ସବୁ—ଯାହା ବୁଝୁଥିବ ସେଇଆ । ତା' ବୁଦ୍ଧି
ଶୁଣନା; ମତେ ଆଜି କହୁଛି—ମା' ବାବୁଙ୍କ ଅଫିସ୍‌ରେ ସବୁ
ଜଣକ ଜାଗାରେ ଆଉଜଣେ କାମକଲେ, ସେ ଦୋହରି
ଦରମା ପାଏ ।
ଗୋବ—ଏକଥା ସେ କହୁଥିଲା ?
କୁନ୍ତଳା—ହଁ ସବୁ ।
ଗୋବ—ତା' ହେଲେ କୁନ୍ତଳା ହେଇଛି ! ଏଣିକି ତେମେ ସାଧୁ,
ସାଧୁ ଦହିଁଙ୍କର ଦ'ଟା ସର୍ଭିସ୍ ବହି ଖୋଲି ଛୁଟି,
ଇନ୍‌କ୍ରିମେଣ୍ଟ ସବୁ ନୋଟ୍‌କର । ନହେଲେ ରକ୍ଷା ନାହିଁ ।

ବଜୁ—(ଦୂରରୁ) ହେ, ଅଯା, କାନ୍ଦନାଇଁ—କାନ୍ଦନାଇଁ କହୁଚ।
କାନ୍ଦିଲେ ପୁଣି ଚାଡ଼ଉଇବ।

ଗୋବ—ଇଏ କଏ ବଜୁଟି ?

କୁନ୍ତଳା—ହଁ ଦ'ଜଣଙ୍କର ପୁଣି କ'ଣ ବାଢ଼ଅ ପିଠା ଲାଗିଲାଣି
ସମାଳ ତାଙ୍କୁ। (ଅଗଣାରେ ବଜୁ ଇତଙ୍କ ପାଟି ଶୁଭୁଥାଏ)

ବଜୁ—ପୁଣି ନାକ ସୁଁ ସୁଁ କଲୁ ?

ଇତ—ଚୁପ୍ ବଦ୍‌ମାସ ଟୋକା।

ବଜୁ—ଏଇ ଦେଖ୍ ମଜା। ଇତ ଶ୍ରୀ ନାକକାନ୍ଦୁଣୀ ପୁରାଣେ—
ଇତଶ୍ରୀ ନାକକନ୍ଦୁଣୀ ପୁରାଣେ......

ଗୋବ—(ବଡ଼ପାଟିରେ) ବଜୁ।

ବଜୁ—(ଦୂରରୁ) ଆଜ୍ଞା।

ଗୋବ—ଏଠିକି ଆସ। ତେମେ ଦହେଁ ଏଠିକି ଆସ। (ଦୁହେଁ
ଆସିଲେ) ହଇରେ ହେ ବଜୁ।

ବଜୁ—ଆଜ୍ଞା।

ଗୋବ—ତୁ କାହିଁକି ଇତକୁ ଏମିତ ଚିଡ଼ଉଚୁ ?

ବଜୁ—ତା ନାଁ ତ ଇତ।

ଗୋବ—ତା ନାଁ ଇତ ବୋଲି ତୁ ତାକୁ କହିବୁ—ଇତଶ୍ରୀ ନାକ
କାନ୍ଦୁଣୀ ପୁରାଣେ...

ବଜୁ—ସେ କାହିଁକି ନାକରେ କାନ୍ଦୁଚ ?

ଇତ—ଏଇ ଦେଖ୍ ନବାବ ?

କୁନ୍ତ—ଆଲୋ ନବାବ ଆଉ ଦେଖିବ କଣ ? ତୋର କ'ଣ
ହେଇଚ ? ଏମିତି ନାକ ସୁଁ ସୁଁ କରୁଚୁ କାହିଁକି ?

ଗୋବ—ଆଲୋ କଣ ହେଇଚ ଇତ କହ ?

ବଜୁ—କହୁ ନାହିଁମ ବୋଉ, ସେ ଗାଳି ପେଲୁଚ।

ଇତ—ତୁ ଗାଳି ପେଲୁଚୁ। ତୁ ମିଛୁଆ।

ବଜ୍ରୁ—ତୁ ମିଛେଇ ।

ଗୋବ—ହେ-ଇ ! ଚୁପ୍‌ହେଇ ଦକଣ ଯା’କ ଠିଆ ହ, କହ ଇତ କଣ ହେଇଚ ?

ବଜ୍ରୁ—ଭଣ ହେଲକ ବାପା······

ଗୋବ—ଚୁପ୍, ତୁ କାହିଁ ଅଗତୁରା ପଡ଼ୁଯାଉଚୁ ? ସେଇ ଇତ କହୁ ।

ବଜ୍ରୁ—କହୁନାହିଁ, କହୁ । କଏ ମନାକରୁଚୁ – ହିଏ କହୁ,

ଗୋବ—ଇତ—ଇନ୍ଦ୍ରମା, କ’ଣ ହେଲ ?

ଇତ—ଗୁଡ଼କଣ୍ଠା କଟିରେ ବଜ୍ରୁ ଗୁଡଣ୍ଠା ଛୁଡ଼ଗଲ······

ବଜ୍ରୁ—ମିଛ—ମିଛ ମିଛ । କଣ୍ଡାମିଛ ଡାହାମିଛ । ମୋ ଗୁଡ଼ ଛୁଡ଼ନାହିଁ—ତୋ ଗୁଡ଼ ଛୁଡଚ ।

ଇତ—ଚୁପ୍ ମିଛୁଆ । ଗୃଲ ଫେଲ୍‌କୁ ଡାକ ପଗୃରବା । ଫେଲ୍ ତ ଙ୍କ କୋଠା ଉପରେ ଠିଆ ହେଇ ଦେଖୁଥିଲ ···

ଗୋବ—ହଇଓ କୁନ୍ତଳା—କଥାକ’ଣ ? ଏ ଦହେଁ କ’ଣ ଗୁଡ଼ ଉଡେଇଲେଣି ?

କୁନ୍ତଳା—ଏ ଗ୍ରକ୍ୟରେ ଆଉ ରହିବା କଥା ନୁହେଁଳେ ମା ! ହଇରେ, ତେମେ ଯାଇ କେତେବେଳେ କୋଠା ଉପରେ ଗୁଡ଼ ଉଡଉଚ ?

ବଜ୍ରୁ—ନାଇଁମ ବୋଉ ।

ଗୋବ—ଚୁପ୍ । ବଦ୍‌ମାସ ଟୋକା । କଅଁଳେଇ କର କହୁଚ—ନାଇଁମ ବୋଉ !!

କୁନ୍ତ—(ଗୋବର୍ଦ୍ଧନକୁ) ତମେ ଶୁଣିଚଟି, ଏଇ ଆଠ ଦଶ ବନ୍ ତଳର କଥା !! କୋଉ ଓକିଲଙ୍କ ପୁଅ—ତେଲଙ୍ଗା ବଜାରରେ—ଅଇ. ଏ ନା କ’ଣ ପଢୁଥିଲ···ଏମିତ ଗୁଡ଼

ଜଡ଼ାଉ ଉଡାଉ ଦୋ' ମହଲରୁ ଖସି ପଡ଼ିଲ ଯେ···ନାହିଁଲେ ମା ମୁଁ ଆଉ ପାରିବ ନାହିଁ କ ଏ ଘରେ ମୁଁ ଆଉ ରହିବ ନାହିଁ । ସ୍ତ୍ରୀ'ଙ୍କର ବହପ ଦେଖ, ଇଏ ଦ'ଟା ପୁଣି କୋଠା ଉପରେ ଯାଇ ଗୁଡ଼ି ଉଡ଼େଇଲେଣି !!

ଗୋବ—ଗୁଡି ସେମାନେ ପାଇଲେ କୋଉଠୁ ? ଗୁଡ଼ି କିଣିବାକୁ ପଇସା ଦେଲ କିଏ ?···ତମେ ଦେଇଚ ?

କୁନ୍ତ—କଣହେଲ ? ମୁଁ ଦେଇଚ ? ମୁଁ ପୁଣି ତାଙ୍କୁ ଗୁଡ଼ି କିଣିବାକୁ ପଇସା ଦେବି ? ଚୋରି କରିଛନ୍ତି । ଚୋରି କରି ପଇସା ନେଇ ଏ ପାଳ ସେ ଲଗେଇଛନ୍ତି ।

ବିଜୁ—(ହସି ହସି) ବୋଉ ।

ଗୋବ—ହଇରେ ତୁ ଏମିତି ହସୁଚୁ କ'ଣ ?

ବିଜୁ—ଦେଖୁନ ବାପା, ବୋଉ କେମିତି ମିଛଟାରେ କାନ୍ଦ କାନ୍ଦ ହେଲଣି ।

ଗୋବ—ପିଲ ବୋଲି ମୁଖଚୋର । ତା କଥା ଶୁଣ । କହୁଛି କଣନା—ବୋଉ ମିଛଟାରେ କାନ୍ଦ କାନ୍ଦ ହେଉଚ ।

ବିଜୁ—ମିଛଟାରେ ନୁହେଁ ଆଉ କ'ଣ ? ଆମେ କ'ଣ ଗୁଡ଼ି ଚୋରଉ ଥିଲୁ ?

ଗୋବ—ଉଡ଼ଉ ନ ଥିଲ ଗୁଡ଼ି କଟିଲ କେମିତି ? ହଇଲେ ଇତି ?

ଇତି—ନାଇଁ ବାପା—ଆମେ ଗୁଡି ଉଡଉ ନଥିଲୁ ।

ଗୋବ—ଆଉ ?

ବିଜୁ—ହେଇତ ବାପା ଶୁଣ—ମୁଁ କହୁଚ । ଏଇ ସେ ଧୋବା ସାଇ ପୋଖରୀ ହୁଡ଼ାରୁ ଦ'ଟା ଗୁଡ଼ି ଉଡ଼ିଲ—ଗୋଟାଏ ନେଳି, ଗୋଟାଏ ନାଲି । ଅପା କହିଲ—ବିଜୁ ଦେଖିଲୁ, ଏ ଗୁଡ଼ି

ଦ'ଣ୍ଠା ଖାଲି ଉଡ଼ିରେ ନା ଲଢ଼ିବେ ? ମୁଁ କହିଲି—ଅପା, ଗୁଡ଼ି ଦ'ଣ୍ଠା କାନଖାଇ ମୁହାଁ ମୁହିଁ ହେଲେଣି—ଅଲବତ୍ ଲଢ଼ିବେ ।

ଗୋବ—ଶୁଣୁଚତ କୁନ୍ତଳା ?

କୁନ୍ତ—ତମେ ତମର ଶୁଣୁଥା । (କୁନ୍ତଳା ଯିବାକୁ ବାହାରିଲେ)

ଗୋବ—ହୁଁ । ସେଇଠୁ କ'ଣ ହେଲା ବଳୁ ?

ବଳୁ—ମୁଁ କହିଲି—ଅପା ଏ ଗୁଡ଼ିଟା ତୋର, ଏ ଗୁଡ଼ିଟା ମୋର ।

ଇତି—ସାଧୁ ହଇନା ସେଟିଥିଲେ । କହିଲେ—ନାଲି ଗୁଡ଼ିଟା ଇତି ମାଁ'ର ଆଉ ନେଳି ଗୁଡ଼ିଟା ସାନ ବାବୁଙ୍କର । ଫେଲୁବ ଶୁଣିଚ ।

ବଳୁ—ମିଛ କଥା ବାପା, କେହି ଶୁଣିନାହାନ୍ତି । ନେଳି ଗୁଡ଼ିଟା କଟିଗଲା ବୋଲି ଅପା ମିଛ କହୁଚି ।

ଗୋବ—ଅଚ୍ଛା ହେଲା ଏବେ, ନେଳି ଗୁଡ଼ିଟା ତୋର; କ'ଣ ଏବେ ଲୋକସାନ ହୋଇଗଲା ?

ବଳୁ—ବାଃରେ ! ମିଛୁଟାରେ ମୁଁ ହାରିଯିବି କାହିଁକି ?

ଗୋବ—ଆରେ କାହାର ଗୁଡ଼ି—କଏ କାଟିଲା—ତୁ ପୁଣି ହାରିବୁ କ'ଣ ?

ବଳୁ—ହାରିଲେ ଦଶ ମୁଁ ବାଜି ହାରିଯିବି ।

ଗୋବ—ଏଁ, ଏଥିରେ ପୁଣି ବାଜି ମରାମରି ହୋଇଥିଲା ? କି ବାଜି ? ଇତି, କ'ଣ ବାଜି ରଖିଥିଲ ?

ଇତି—ଗୋଟାଏ ପୁରୁଣା ବ୍ଲେଡ଼୍ ।

ଗୋବ—(ହୋ ହୋ ହୋଇ ହସି ଉଠି) ଶୁଣୁଚ କୁନ୍ତଳା, ଗୋଟାଏ ପୁରୁଣା ବ୍ଲେଡ଼ରୁ କଥା ଆସି ଏଠି ହେଲାଣି !

କୁନ୍ତ—ତେମେ ବ କ'ଣ ଏମାନଙ୍କ ସାଥିରେ ଏଇଠି ବସି ଏଇଅ ହଉଥିବ ?

ଗୋବ—ସେ ଚଉକଟା ଝାଣିଆଣି, ତମେ ମଧ ଏଠି ବସ । ବାପ, ମା, ପୁଅ, ଝିଅ—ସମସ୍ତେ ଆମେ ଏଠି ଅଛେ । ଏ ଗୃହକର୍ଅ ଜୀବନରେ ତ କେବେ ହେଲେ ପୂରାପୂରି ପାରି ବାରିକ ଜୀବନର ସ୍ୱାଦ ଚାଖିବାକୁ ମିଳେନା । ଅଜ ପିଲଙ୍କର ପରୀକ୍ଷା ଶେଷ ହୋଇଚ । ମୁଁ ବେଳାବେଳ ଅଫିସ୍‌ରୁ ଫେରିଚ—ତମେବ ଆସ—

କୁନ୍ତଳା—ହୋଇଛ, ଯେ ସବୁ ନବରଙ୍ଗ ଥାଉ । ବିକ୍ରୁ ଇତିଙ୍କର ପୁଣି ସ୍କୁଲ ଖୋଲ ପଢ଼ାପଢ଼ି ହବାଯାଏ, ତାଙ୍କୁ ତମେ କାମରେ ଲଗାଅ । ନଇଲେ ମୋଟେ ସମାଳି ପାରିବ ନାଇଁ—ଦ'ଟା ଯାକ ବଗିଡ଼ ଯିବେ ।

ଗୋବ—କାମ ? କି କାମ ସେ କରିବେ ? ଇତି ପରା କ'ଣ ସିଲଇ କାମ କରୁଚ ? ହଇଲେ ଇତି ?

ଇତି—ହଁ, ବାପା, ଏଇ ଦେଖୁନ—ଦେଖ । (ଥାକ ଉପରୁ ସିଲଇ ଜିନିଷ ସବୁ ଆଣି ଦେଖାଇବ)

ଗୋବ—କ'ଣ ଏଇଟା ?

ଇତି—ଟେବୁଲ କ୍ଲଥ ।

ଗୋବ—ଏ ଫୁଲ ସବୁ ତୁ ପକେଇଚୁ ?

ଇତି—ହଁ, ସବୁ ମୁଁ ବୁଣିଚ ।

ଗୋବ—ବାଃ ! ଖୁବ୍ ସୁନ୍ଦରତ ହୋଇଚ । ଏଇଟାକୁ ଥାକ ଉପରେ ସାଇତ ରଖିବୁ କାହିଁକି ? ଟେବୁଲ ଉପରେ ପକାଉନୁ—

ଇନ୍ଦ—ଟେବ୍‌ଲ୍ କାହିଁ ?

ଗୋବ—ଘରେ ଆମର ପାଞ୍ଚଟାକ ସାତଟା ଟେବ୍‌ଲ୍,—କହୁଚ, ଟେବ୍‌ଲ୍ କାହିଁ ?

ଇନ୍ଦ—ସବୁ ଗୁଡ଼ାକ ବଡ଼ ଗୃହ କୋଣିଆ । ଗୋଟାଏ ଷ୍ଟେଟ ସାଇଜ୍‌ ର ଛ କୋଣିଆ ଟେବ୍‌ଲ୍ ନହେଲେ ଏଇଟା ସାଜବ ନାହିଁ । ଗୋଟାଏ ଛ କୋଣିଆ ଟି ଟେବ୍‌ଲ୍ ଆଣ ବାପା— ମେହେଗାନି ନଇଲେ ସାଗୁଆନ କାଠର ।

କୁନ୍ତଳା—ହେଲନ୍ତ ! ଝିଅଙ୍କ ସିଲେଇ କାମ ଦେଖିଲଣି ? ଲକିଆ ଖୋଲଟା ଫାଟି ଯାଇଥିଲା—ସିଲେଇ କରିବାକୁ କହିଲି । ଏମିତ ମିହିନ୍‌ଦାନା ସିଲେଇ କଲା ଯେ, ତା ଆର ଧାନକୁ ଯୋଡ଼ ଫଟାକୁ ସେଇ ଫଟା । ସେ ଧାନତ ଦଶଟଙ୍କାରେ କନା ଆଉ ସୂତା କିଣି ଆଣି ଦେଇଥିଲ— ଏବେ ପୁଣି ଦଶ ଟଙ୍କାଣି ପଡେଇ ସାଗୁଆନ କାଠର ଟେବ୍‌ଲ—ଆଣିଦଅ । ସିଲେଇ ଶିଖିବାଜ ଟେବ୍‌ଲ୍ କ୍ଲଥ୍ ବୁଣିବ । ଟେବ୍‌ଲ୍, କ୍ଲଥ୍ ହେଲାଉ—ଟେବ୍‌ଲୁ ଆଣି ଥୁଅ । ଇଏ ସିନା କାମ !

ଇନ୍ଦ—ବୋଉ ଖାଲି ସବୁ କଥାରେ ଏମିତ ଅଡ଼ୁଆ ପୂରେଇବ !

ବଙ୍କୁ—ସତକଥା ବାପା ! ବୋଉ ଏସବୁ କଥା ମୋଟେ କିଛି ବୁଝି ପାରୁନାହିଁ ।

କୁନ୍ତ—ଛି ! ଏଇନେ ବାଉଆ ପିଟା ଲଗେଇ ଥିଲ—ଏଇନେ ପୁଣି ମୁହଁକୁ ମୁହଁ ଯୋଡ଼ ଦେଲଣି !! ହେଇତ, ମୁଁ ଯାହା କହୁଚ, ଯୁଆଁଙ୍କୁ କାମରେ ଲଗାଅ । ନଇଲେ ଏମିତ ଖାଇ ପିଇ ଦୁର୍ଦ୍ଧର୍ଷ ହଉ ଥିବେ ।

ଗୋବ—ତାଁରୁ ନେଉଛିଅ ଶାଗ ମଞ୍ଜି ଅଣେଇଚ ପରା ?

କୁନ୍ତ—ହଁ ।

ଗୋବ—ତା'ହେଲେ ଟଜୁ ଇଡ ଦୁହେଁ କାଲ ସକାଳୁ ଉଠି ବାରିରେ ଶାଗ ପଟାଳି ହାଣ । ପାରିବଡ ?

ଟଜୁ—ହଁ ବାପା ! ମୁଁ ପାରିବ । ହାଣି କୁଟି ସବୁ ସାଫ୍ କରି ଦେବି ।

ଗୋବ—ବେଶ୍ । ତୁ ହାଣିବୁ' ଇଡ ଘାସ ବାଛୁବ ।

କୁନ୍ତ—କଥାଟାଏ ଏକା କହୁଲ ? ସିଏ ଯେମିତକା ଆଙ୍ଗୁଠି ଦେଖେଇଲେ ବାହା ଗିଳିବା ପିଲ—କାଲ ସକାଳୁ ଉଠି ମାଟିଡ ହାଣିବ ନାଇଁ—ହାତ ଗୋଡ଼ ଦ'ଖଣ୍ଡ କରି ରଖିବ ! ଇଏ ଯେମିତ କାମ ବଗ୍ଦ କଲବାଳ—ସିଏ ସେମିତ କାମ କଲ ବାଳ । ମୁଁ ଯାଏଁଲେ ମା—ଝଳ ଗଡ଼ିଲଣି । ତେଣେ ଦୁଆରଟା ଅଖରକା ତଡ଼ିଚ । ଝଜ ବଲା ହେଇନ୍ନ । ହିଁଅକିଏ ହେଉଚନ୍ତି ଯେ, ଝଜବତୀ ଦଣ୍ଟା ସଜାଡ଼ିବାକୁ କହୁଲେ, କହୁବେ—ଘିଅହାତ ହେବାକୁ ଅସନା ଲଗୁଚ । ହଁ' ତୁମ ଗୁଣମଣି ପୁଙ୍ଗାସଙ୍କ କଥା ଶୁଣିଚ ? ସଧୁ ନାହିଁ ବୋଲ ସିଏ କୁଅଡ଼େ ବଜାରରୁ ଅଣ୍ଡା କଣି ଅଣିବ ନାଇଁ—ତମେ ନିଜେ ଯାଇ ଅଣିବ ।

ଗୋବ—କାଇଁକି ?

କୁନ୍ତ—କହୁଲ ପରା—ମୋର ସେଠି କେତେ ସାଙ୍ଗଭଇଥିବେ—ମୁଁ କୁକୁଡା ଅଣ୍ଡା ଛୁଇଁଲେ ସେମାନେ କହୁବେ କଣ ?

ଗୋବ—ଅରେ, ଠିକ୍ କଥା କୁନ୍ତଲା । ଏଇ ଅଣ୍ଡା କଥାରୁ ମୋର ମନେପଡ଼ିଲା । ନବମିଆଁ ମତେ ଦ'ଟା କୁକୁଡ଼ା ଦବ ବୋଲି କହୁଚ । ଖୁବ୍ ଜାତି କୁକୁଡ଼ା ।

କୁନ୍ତ—ପୂର୍ବାପରି ଗଳ ବଜାରରୁ ମାଛ ଆଣିବ—ଆଜ କୁକୁଡ଼ା ପୁଣି ହବ କଣ ?

ଗୋବ—ଖାଇବା କଥା ନୁହେଁ ହୋ ! କୁକୁଡ଼ା ଆଣି ପାଳିବ ।

କୁନ୍ତ—କ'ଣ ହେଲ ? ଘର ଭିତରେ ଉଠେଁ ଆଣି କୁକୁଡ଼ା ପାଳିବ ? ଠାକୁର ଘର, ରୋଷେଇ ଘର ସବୁ ମାର୍‌ କରିବେ ?

ଗୋବ—କିଛି ମାର୍‌ହବ ନାହିଁ କୁନ୍ତଳା । କୁକୁଡ଼ା ପାଇଁ ଘର ତିଆରି ହବ । କୁକୁଡ଼ା ରହିବେ । ସକାଳୁ ଉଠି ବିଜୁ, ଇତି କୁକୁଡ଼ାଙ୍କୁ ଚାଉଳ ମୁଢ଼ି ଖାଇବାକୁ ଦେଇ ବାହାରେ ଛାଡ଼ି ଦେବେ ? ବାରଟା ବେଳେ ସିଦ୍ଧ ପାଣି ଖୁଆଇ ଘରେ ଭର୍ତ୍ତି କରେଇବେ । ଉପର ବେଳା ଘଣ୍ଟାଏ ଚରାଇ, ପୁଣି ଆଣି ଘରେ ଭର୍ତ୍ତି କରେଇବେ । ସାଧୁ ଫେରିବା ଯାଏ—ଏ ବ୍ୟବସ୍ଥା ଚାଲିବ । ବୁଝିଲ ? ବିଜୁ, ଇତି କାମରେ ଲଗିବେ—ଆଉ ପ୍ରତିଦିନ ଆମର ତାଜା ଅଣ୍ଡା ମିଳିଯିବ । ହଁ, ବିଜୁ, ସେ ଯୋଉ କାଠ ତାବଲଟା ସେ ପାଖ ବାରଣ୍ଡାରେ ପଡ଼ିଥିଲା—ବାହାର କର । ମୁଁ ନବନିଆଁ ଘରକୁ ଯାଏଁ ।

---

# ଦ୍ୱିତୀୟ ଦୃଶ୍ୟ

[ ଗୋବର୍ଦ୍ଧନ ବାବୁଙ୍କ ଘରର ଅଗଣାର ଏକ ଅଂଶ । ସଂଧ୍ୟା ଉତ୍ତୀର୍ଣ୍ଣ ହୋଇ ଯାଇଛି । ଗୋବର୍ଦ୍ଧନ ବାବୁ କକୁଡ଼ା ପାଇଁ ଘର ତିଆରି କରିବାରେ ବ୍ୟସ୍ତ । ସମସ୍ତ ଦରକାରି ସାଜ-ସରଞ୍ଜାମ ସହ ଇତି ଓ ବିଜୁ ମଧ୍ୟ ସେଠି ଅଛନ୍ତି । ଗୋବର୍ଦ୍ଧନ ବାବୁଙ୍କ ନିର୍ଦ୍ଦେଶ ମତେ ଏ ଦୁହେଁ କାମ କରି ଚାଲିଛନ୍ତି ]

ଗୋବ—ହିଁ, ଅଲ୍ଅଟା ଟିକିଏ ଠେଲିକି ଧରିବୁକି ଇତି ।...ହିଁ—ତାହେଲେ ତିନି ପାଖ ଠିକ୍ ବନ୍ଦ ହୋଇଗଲା । ଖାଲି ଏ ପାଖର ଏଇ ଦୁଆର ମୁହଁ...ଏଁ ବିଜୁ, ସେ ଦୁଆର ମୁହଁ ପଟାଟା ସେଠୁଁ ହେଲେ, ମୁଁ ଦେଖେ । ଉହୁଁ, ଏଠିତ ଟିକିଏ ଫାଙ୍କ ରହି ଯାଉଛି । ଏଠି ଝଟ୍ରେ କ'ଣ ଦବାକୁ ହେବ । ଇତି ସେ ଟୁକୁରା ପଟା ଖଣ୍ଡିକ କ'ଣ ହେଲା ?

ଇତି—ଏଇ ନିଅ ବାପା ।

ଗୋବ—ହିଁ । ବିଜୁ ଗୋଟାଏ କଣ୍ଟା ଆଣ୍ ।

ବିଜୁ—ହୋଇଗଲା ବାପା, କଣ୍ଟା ନିଅ ।

ଗୋବ—ଆଚ୍ଛା, ଇତି, ତୁ ଆଲ୍ଅଟା ଭୁଲେଇ କରି ଏ ପାଖରେ ଦେଖା । ବିଜୁ, ମୁଁ ଏଠି ଧରିଛି, ତୁ ପିଟ୍ ।

ବିଜୁ—ଏଇ କଣ୍ଟାକୁ ପିଟିବି ତ ?

ଗୋବ—ହିଁ, ଠିକ୍ ଲକ୍ଷ୍ୟ କରି କଣ୍ଟା ଉପରକୁ ପିଟ୍ ।

ବିଜୁ—ପିଟୁଛି...

ଗୋବ—ଆରେ, ପିଟୁଚି ପିଟୁଚି କଣ ହେଉଚୁ, ପିଟ୍ ।

ବିଜୁ—କୋଉଥିରେ ପିଟିବି ? ହାତୁଡ଼ି କାହିଁ ?

ଗୋବ—ହାତୁଡ଼ି ଏଇନେ ଏଇଠି ଥିଲା, କଣ ହେଲା ? ଇତି, ହାତୁଡ଼ି କଣ ହେଲା ?

ଇନ୍ଦ—କାହିଁ ହାତୁଡ଼ିତ ଏଠି ନାହିଁ ।

ଗୋବ—ନାହିଁ ତ ଗଲା କୁଆଡ଼େ ? ଏ ଗୁହାକ ଦେଇ କଣ୍ଟା ହବ ନାହିଁ ପରା ! ( କୁନ୍ତଳା ଆସିଲେ )

କୁନ୍ତ—ଏ କ ନବରଙ୍ଗ ଏଠି ଲଗିଚି, ଶୁଣେ !

ଗୋବ—ହାତୁଡ଼ିଟା ଏଠୁ କିଏ ନେଲା ?

କୁନ୍ତ—କଣ ଆଉ ତମକୁ କହିବ, ନିଜେ ଦଣ୍ଡ ହୋଇ ପଛା ଖଣ୍ଡିକ ଉପରେ ହାତୁଡ଼ିଟାକୁ ପାଦରେ ମାଡ଼ି ଧରିଚ ।

ଗୋବ—ଓଃ ! ଏଇ ନେ ବଜ୍ରୁ, ପିଟ୍ (ବଜ୍ରୁ ହାତୁଡ଼ି ଧରିଲା)

ବଜ୍ରୁ—ପିଟିବି ?

ଗୋବ—ହଁ ପିଟ୍ ।

( ବଜ୍ରୁ ପିଟିବା ପାଇଁ ପ୍ରସ୍ତୁତ ହୋଇ ହାତୁଡ଼ିଟାକୁ ଟେକି ଧରିଲା ବେଳେ ଦୂରରୁ ସାଧୁଙ୍କ ପାଟି ଶୁଣାଗଲା । )

ସାଧୁ—(ଅନ୍ତରାଳରୁ, ଚିତ୍କାର କରି) ଉଡ଼ିଗଲା—ଉଡ଼ିଗଲା—ପଳେଇଗଲା ମା ! ଧର-ଧର—

(ସାଧୁଙ୍କ ଚିତ୍କାରରେ ବଜ୍ରୁର ଲକ୍ଷ୍ୟଭ୍ରଷ୍ଟ ହେଲା । ଫଳରେ ସେ କଣ୍ଟାକୁ ପିଟିବା ପରିବର୍ତ୍ତେ ଗୋବର୍ଦ୍ଧନ ବାବୁଙ୍କ-ଆଙ୍ଗୁଠିକୁ ପିଟିଦେଲା )

ଗୋବ—(ଚିତ୍କାର କରି) ଓ ହୋ—ହୋ—ମରିଗଲିରେ ବାବା ! ଅଙ୍ଗୁଠିଟାକୁ ପିଟି ଛତୁ କରି ଦେଲା ।

(ସାଧୁଙ୍କ ପାଟି ଶୁଣିବା ସଙ୍ଗେ ସଙ୍ଗେ କୁନ୍ତଳା ସେ ଆଡ଼କୁ ଚାଲି ଯାଇଥିଲେ । ସାଧୁ ସହିତ କଥା କହି କହି ସେ ଫେରିଲେ)

କୁନ୍ତ—ହଇ ଓ ସାଧୁ କ'ଣ ହେଲା ?

ସାଧୁ—କୁକୁଡ଼ାଟା ପଳେଇଗଲା ।

କୁନ୍ତ—ଠାକୁର ଘର କବାଟ ଖୋଲା ଅଛି ବନ୍ଦ କରିଦିଅ ।

ସାଧୁ—ତେଣେ ରୋଷେଇ ଘର ମେଲା ପଡ଼ିଚି ।

କୁନ୍ତ—ଆଗେ ଠାକୁର ଘର ବନ୍ଦ କର । (ସାଧୁର ପ୍ରସ୍ଥାନ)

ଗୋବ—ଠାକୁର ଘର, ରୋଷେଇ ଘର ସବୁ ଥାଉ, ଆଗେ କଣ ଔଷଧ ଟିକିଏ ଆଣିବଟି, ମୋ ଅଙ୍ଗୁଠିଟା ଛେଚି ହୋଇଗଲା ।

କୁନ୍ତ—ମଣିଷ ମର ଯା'ନ୍ତା ହେଲେ ଏ ଘରେ । (ପ୍ରସ୍ଥାନ)

ଇନ୍ଦୁ—ଏଇ ଟୋକା ଯୋଉଠି ଥିବ ।..

ବଜୁ—ମୁଁ କଣ କରିବି । ମୁଁ ହାତୁଡ଼ି ପିଟିଲା ବେଳକୁ ସାଧୁ ନନା ହୋ କରି ପାଟି କରି ଉଠିଲା—ମୋ ହାତ ଖସିଗଲା । ( ଗୋଟାଏ ଚନ୍ଦନ ପେଡ଼ି ଓ ଔଷଧ ଶିଶି ଧରି କୁନ୍ତଳା ଆସିଲେ )

କୁନ୍ତ—ଏଇ ନିଅ ଔଷଧ ।

ଗୋବ—ମଲା ଏ ଚନ୍ଦନ ପେଡ଼ିଟା କଣ ଦଉଚ ?

କୁନ୍ତ—ପୋଡ଼ି ଯାଉ ମୋ ମନ ! ଏ ହାତରେ ଏଇ ଔଷଧ ଶିଶିଟା ଧରିଚି, ନିଅ ।

ଗୋବ—ସାଧୁକୁ ଏଣିକି ଡାକ ।

କୁନ୍ତ—ପୁଙ୍ଗାଣ୍ଡି, ଏଣିକି ଆସ । (ଗୋବର୍ଦ୍ଧନଙ୍କୁ) ତମ ଅଙ୍ଗୁଠିରୁ ରକ୍ତ ବୋହୁ ନାହିଁ ତ ? ( ସାଧୁ ଆସିଲା )

ଗୋବ—ନା । ସାଧୁ କୁକୁଡ଼ାର ବାଲ୍‌ଟି ତଳେ ଚଙ୍ଗା ହୋଇଥିଲା— ପିଟିଲା କେମିତି ?

ସାଧୁ—ମୁଁ ବାଲ୍‌ଟି ଉଠେଇ ନେଲି ।

ଗୋବ—ଏତେବେଳେ ଉପର ସେ ବଡ଼ ବାଲ୍ଟିଟାରେ କଣ
ଦର୍କାର ଥିଲା—ତେମେ କାହିଁକି ଉଠେଇଲ ? କୁକୁଡ଼ାଟ
ଗଲା—ମୋ ଅଙ୍ଗୁଠି ଏଣେ ଛେଚି ହୋଇଗଲା । ଏଁ !!
କୁକୁଡ଼ା ପୁଣି ଗଲା କୁଆଡ଼େ ?

ସାଧୁ—ଏଇ ଅଗଣା ଭିତର ଫୁଲଗଛ ଆଡ଼କୁ ଡ଼ ଫର ଫର
ହୋଇ ଉଡ଼ିଗଲା ।

ଗୋବ—ପାଚେରି ଡେଇଁ ରାସ୍ତାକୁ ଯେ ବାହାରି ଯାଇ ନ ଥବ
କିଏ କହିବ !

ସାଧୁ—ଯାଇଥିବ ଆଜ୍ଞା, ଉଡ଼ନ୍ତା ଜୀବ ।

ଗୋବ—ରାସ୍ତାକୁ ଯାଇ ଖୋଜ ।

ସାଧୁ—ଆଜ୍ଞା ମୁଁ ଖୋଜିବି ! କୁକୁଡ଼ା !! ବଜାରରୁ ଅଣ୍ଡା
କିଣି ଆଣିବାକୁ ମତେ କେମିତି କେମିତି ଲାଗିଲା—
ମୁଁ ଆଣିଲି ନାହିଁ । ରାସ୍ତା ଉପରକୁ କୁକୁଡ଼ା ଖୋଜି
ଯିବି !!

ଗୋବ—ଯାଅ କହୁଚି ।

ସାଧୁ—ଯାଉଚି ଆଜ୍ଞା ! ନଜେଇ ଆଜିଟି—କହିବି କାହାକୁ !
(ପ୍ରସ୍ଥାନ)

ଗୋବ—ବନ୍ଧୁ, ଇଡ଼ ଏଣେ ଆସ—ଅଗଣାଟା ଖୋଜିବା ।
ବନ୍ଧୁ, ତୁ ସେ ନଳା ମୁହଁ ପାଖେ ଜଗ୍ । କୁନ୍ତ ତୁମେ
ଟିକିଏ ବାଡ଼ିପଟକୁ ଯାଅ ।

କୁନ୍ତ—ମଲ ମୁଁ ଯିବି କାହିଁକି ! ମୋର ସେ ମଶା ବଣଟାରେ
କିଏ ଠିଆ ହବ ?

ଗୋବ— ନଇଲେ ଯେ ଦି'ଟା ଟଙ୍କା ପାଣିରେ ପଡ଼ିଲା ! ଗୋଟାଏ
କୁକୁଡ଼ା ଦାମ୍ ଦି' ଟଙ୍କା !

କୁନ୍ତ—ତମକୁ ଆଜ ପାଚିହେବ ନାହିଁ !!

ଗୋବ—ଦେଖିବୁଝି ମା ଇତ, ସେ ବଙ୍ଗଣୀ ଗଛ ସେ ପାଖେ ଦେଖିବୁଝି। (ଇତ ପାଦେ ଦ'ପାଦ ଯାଇ ଚମକ ପଡ଼ଲା)

ଇତ—ଇଲେ ବୋଉଲେ, ମଲି।

କୁନ୍ତ—କ'ଣ ହେଲା ଇତ, କଣ ହେଲା ?

ଗୋବ—କିଛି ନାହିଁମ, ବ୍ରାହ୍ମଣୀ ବେଙ୍ଗଟାକୁ ଦେଖି ଡରିଲା !

ଜଣେ ଲୋକ—(ବାହାରୁ) ବାବୁ ଘରେ ଅଛ !

ଗୋବ—କିଏ ? (ଲୋକଟି ଆସିଲା)

ଲୋକ—ମୁଁ ବସ୍ତିବାଲା ଦୋକାନୀ ! ଅପଣଙ୍କର ଗୋଟେ କୁକୁଡ଼ା ହଜିଥିଲା !

ଗୋବ—ହଁ—

ଲୋକ—ସେଇଟାକୁ ସେ ଭଡ଼ିବାଲା ଟୋକା ମହାମ ନେଇ ଯାଇଥିଲା । ଆପଣଙ୍କ ପୁଷ୍ପାସ୍ତ୍ର ସାଧୁ ମହାମକୁ ଧରିଲା—ଦହିଁଙ୍କର ମାଡ଼ ଫୌଜଦାରୀ ହେଇଗଲା—ଜମାଦାର ଦୁହିଁଙ୍କୁ ଥାନାକୁ ଧରିନେଲେଣି ।

ଗୋବ—କେତେବେଳେ ଏତେକଥା ହେଲା ?

ଲୋକ—ଏଇ ସାଥେ ସାଥ୍ । ସାଧୁ କହୁଚ, ତମେ ବାବୁ ଥାନାକୁ ଯାଅ—ନଗଲେ କମାଦାର ତାକୁ ଛାଡ଼ିବ ନାହିଁ । ଯାଅ ବାବୁ (ପ୍ରସ୍ଥାନ)

କୁନ୍ତ—ଥାନାକୁ ଯାଉଚ ?

ଗୋବ—ସୂର୍ଯ୍ୟାସ୍ତ ଦେଖିବା ଲୋଭରେ ବେଗାବେଗି ଅଫିସରୁ ଆସିଥିଲି—ଯାଏଁ, ଥାନା ଆଡ଼େ ଟିକେ ସାନ୍ଧ ଭ୍ରମଣ କରି ଆସେ—ଭିଜ ଇତଙ୍କ ହଂହଂରୁ ରକ୍ଷା ମିଳିବ । (ହସି) ଆରେ ଶୁଣିଁଚ କଣ—ସାଧୁ ଯାଇଥିଲା, ସାଧୁ ଗଲାଣି—ତମେ ସେପେଇ ଘରକୁ ଯାଅ—ମୁଁ ଥାନାକୁ ଯାଉଚି—ବୁଝିଲ ।

---

## ଏ ଚକ୍ରରେ ଅଛନ୍ତି :

ଗୋବର୍ଦ୍ଧନ ବାବୁ—ଗୃହସ୍ୱାମୀ

ବଜୁ—ତାଙ୍କ ପୁଅ

ସାଧୁ—ତାଙ୍କ ପୂଜ୍ୟାରୀ

ରଘୁ—ତାଙ୍କ ଚାକର

ଓ

ସୀତାଦେବୀ—ଜଣେ ପଡ଼ୋଶୀ ଭଦ୍ର ମହିଳା

# ପଞ୍ଚମ ଚିତ୍ର

## ପ୍ରଥମ ଦୃଶ୍ୟ

[ ଗୋବର୍ଦ୍ଧନ ବାବୁଙ୍କ ଗୃହର ଅଳନ୍ଦ । ସାଧୁ ଏକାକୀ ବସିଛି । ସମୟ—ଆସନ୍ନ ସଂଧ୍ୟା । ରାଧୁ ଆସିଲା ]

ରାଧୁ—(ଗୁପ୍ତ ଗଳାରେ) ଭାଇନା—ହୋ ଭାଇନା—

ସାଧୁ—ଏଡ଼େ ବଡ଼ ଘରଟାରେ ତ ତୁ-ମୁଁ ଏକା, ଆଉ କେହି ନାହାନ୍ତି । ଏମିତି ଫୁସ୍ ଫୁସ୍ ହଉଚୁ କାହିଁକି ? କଣ ଏମିତି ବିଶ୍ୱାସ କଥା ଯେ—

ରାଧୁ—(ପୁଣି ଗୁପ୍ତଗଳାରେ) ହାଉ ତେରକି ! କେମିତିକା ଦୁଷ୍ଟା ମଣିଷଟାଏ ! ଘରେ ଆଉ କେହି ନାହାନ୍ତି ବୋଲି ମୁଁ ଆଉ ଜାଣି ନ ଥିଲି ! ଏଡ଼େ ପାଟିରେ କଥା କହିବାକୁ ମୋର ଆଉ ପାଟିଟାଏ ନାହିଁ ! ମୁଁ କଣ ଭୁଆସୁଣୀ ହେଇଥିଲି ଯେ ତମକୁ ଫୁସ୍ ଫୁସ୍ କରି କଥା କହୁଥିଲି ?

(ଏଣିକି ଦୁହେଁ ନିମ୍ନ ସ୍ୱରରେ କଥା ହେଲେ)

ସାଧୁ—କଣ ତେବେ କହୁଚୁ ?

ରାଧୁ—କହିବି ଆଉ କୈଟାଟା ! ତେମେ ତ ଏଡ଼େ ବଡ଼ ପାଟିଟାଏ କରି ସବୁ ଭଣ୍ଡାର କରି ଦେଲଣି !

ସାଧୁ—ଆରେ କ'ଣ ହେଇଚି କହ । ଘରେ ଚୋର ପଶିଥିଲା—ପଳେଇଲା !

ରାଧୁ—ଗ୍ଭେର ପଶି ନଥିଲ ଯେ, ଗ୍ଭେରଙ୍କ ଲୋଗା ଭୂନ ଭୂନ ଆସି ସେ ଘରେ ବସିଲେଣି ।

ସାଧୁ—କଏ ?

ରାଧୁ—ଆମ ବାବୁ ।

ସାଧୁ—ଏଇନେ ମତେ କହୁଥେଲ—ମୁଁ କୁଆଡ଼େ ହୁଣ୍ଡ୍ରାଟାଏ ! ମୁଁ ଉ ହୁଣ୍ଡ୍ରା—ତୁ କଣ ? ଘରର ମାଲକ ଯିଏ, ସିଏ କାହିଁକି ଗ୍ଭେରଙ୍କ ଲେଖା ଭୂନ ଭୂନ ହୋଇ ଘରକୁ ଆସିବେ ?

ରାଧୁ—ଆସି ନାହାନ୍ତି ?

ସାଧୁ—କଏ ଦେଖିଚ ?

ରାଧୁ—ମୁଁ । ସାଇକଲକୁ ଦାଣ୍ଡ ଘରେ ଥିଉକରି ରଖିଦେଲେ । ଟୁଂ—ଟାଂ କଲୁ ନାହିଁ । ସେଇଠୁ ଭୂନହୋଇ ଘର ଭିତରକୁ ପଶିଗଲେ ।

ସାଧୁ—ଘର ଭିତରେ ବଇଚନ୍ତି ?

ରାଧୁ—ହିଁ । ହୋଇ, ଏଇଠୁ ଦେଖୁନ—କେମିତ ଚୌକି ଉପରେ ଗୁମ୍ ହୋଇ ବସିଚନ୍ତି ।

ସାଧୁ—ମାଲୁ ଅନ୍ଧାର ଗଡ଼ ଗଲଣି—ଆଲୁଅ ଜାଳ ନାହାନ୍ତିଉ ?

ରାଧୁ—ନା, ସେମିତ ବଇଚନ୍ତି ।

ସାଧୁ—ବାବୁତ ଅଇଲେଣି—ତୁ ଏଠି ମାମ୍‌ଲଉ ଗିରି କରୁଚୁ କଣ ? ଯାଉନୁ ସେଠିକି—

ରାଧୁ—ନା—ନା ମୁଁ ଯିବନ ।

ସାଧୁ—ଯିବୁ ନାଇଁ ? ନଯା—ମୁଁ ଯାଉଚ ।

ରାଧୁ—ଭାଇନା—

ସାଧୁ—ତୋ ଗୁକକ୍ସ ଚୋଟେ ପିଠା ଲାଗିଲଣି କରେ ରାଧୁ ?

ରାଧୁ—ମୋ' ଗୃହକର୍ତ୍ତ ତ ପିଠା ଲଗିଲଣି । ହେଲେ ତେମେ ଯଦ
ଏଇନେ ବାବୁଙ୍କ ପାଖକୁ ଯିବ ନା, ଏମିତ ମିଠା ଗୃହଣିଥିବ
ଯେ, ଜୀବନସାର ଭୁଲିବ ନାହିଁ ।

ସାଧୁ—ଏଇଟା ପାଗଳ ହେଇଗଲଣି ।

ରାଧୁ—ମୁଁ ପାଗଳ ହେଲଣି !! ହେଇ ଅନା—ସେ ବାରଣ୍ଡାରେ
ପାଣି ବାଲ୍‌ଟି, ଲୋଟା, ସାବୁନ୍ ସବୁ ଥୋଇଚ । ଟୁଲ୍
ଉପରେ ଲୁଙ୍ଗି—ଉଜଳିଆ । ଅଫିସରୁ ଫେରି ଯିଏ ସାଙ୍ଗେ
ସାଙ୍ଗେ ମୁହଁ ହାତ ଧୋଇବା ଲୋକ, ସିଏ ଘଡ଼ିଏ ହେଲା
ଆସି ସେମିତ ବସି ରହିଚନ୍ତି ।

ସାଧୁ—କାହିଁକି ?

ରାଧୁ—ତେମେ କହନ—କାହିଁକି ?

ସାଧୁ—କ'ଣ—ମା' ନାହାନ୍ତି ବୋଲି ?

ରାଧୁ—ହଁ—ସେଇଆ । ମା' ନାହାନ୍ତି ।

ସାଧୁ—'ସେଇଆ' 'ସେଇଆ' କଣ ହଉଚୁ ? ମା' ତ ନାହାନ୍ତି—
ଆମେ ଏଣେ ଫୁସ୍ ଫୁସ୍ ହେଇ ବଗୁର ବସେଇବା !
ତାଙ୍କ କାମ ଆଜ୍ ହବନାଇଁ ?

ରାଧୁ—ତେମେ ଭଇନା ମଣିଷ ନୁହଁ ଯେ ଗୋଟିଏ ଗୋବର
ଗଣେଶ ।

ସାଧୁ—(ରଟିଯାଇ)ରାଧୁ !

ରାଧୁ—କେତେ ପାଟିଟାଏ କରୁଚ ମ ? ଆଚ୍ଛା, ବାବୁ ଅଫିସରୁ
ଫେରି ପହିଲେ କାହାକୁ ଡାକନ୍ତି କହିଲ ?

ସାଧୁ—କାହାକୁ ଡାକନ୍ତି ?

ରାଧୁ—ପଚୃରୁଚି ପରା, କହ !

ସାଧୁ—ଡାକନ୍ତି ! ତଟେ ଡାକନ୍ତି—ଉହୁଁ—ମତେ ଡାକନ୍ତି ।

ସୁଧ—ସତେ !

ସାଧୁ—ନାହିଁ—ନାହିଁ ମା'ଙ୍କୁ ଡାକନ୍ତୁ ।

ସୁଧୁ—ଜାଣିଚ ! ସବୁ ଦିନେ ଆସି ଦାଣ୍ଡ ଦୁଆରେ ଗୋଡ଼ ଦେଇ ଥିବେ କି ନାହିଁ—ସେଇଠୁ ଡାକଚେ—କୁନ୍ତଳା !! କେଞ୍ଜ କରୁଚ କି ?

ସାଧୁ—ହଁ ।

ସୁଧୁ—ଆଜ କାହିଁକି ଡାକଲେ ନାହିଁ ?

ସାଧୁ— ସତରେ ଏଇଟା ପାଗଳ ହୋଇଗଲଣି । ଆଜ ମା' ତ ନାହାନ୍ତି, ଡାକବେ କାହାକୁ ?

ସୁଧୁ—ମା ନାହାନ୍ତି ବୋଲି ବାବୁ ଜାଣନ୍ତି ?

ସାଧୁ—ଜାଣି ନାହାନ୍ତି ? ସକାଳେ ପରା ସେଇ କଥା ପଡ଼ିଥିଲା ।

ସୁଧୁ—କି କଥା ପଡ଼ିଥିଲା ? ସକାଳେ ତ ବାବୁଙ୍କ ମୁହଁ ଏଣିକି— ମା'ଙ୍କ ମୁହଁ ତେଣିକି । କଥା ଆଉ କ'ଣ ପଡ଼ିଥିଲା ? ମା କହିଲେ—ମୁଁ ଭାଇଙ୍କ ପାଖକୁ ଯିବି । ବାବୁ କହିଲେ— ତମ ଇଚ୍ଛା, ତମେ ଯିବ—ମତେ ପଚାରୁଚ କାହିଁକି ? ମୁଁ କିଏ ? ଘୋଇନା ଭଣ୍ଡାରୀ ?···କହି ନାହାନ୍ତି ଏକଥା ?

ସାଧୁ—କହିଲେ ତ । ହେଲେ ଏଇଥିରୁ କ'ଣ ବାବୁ ବୁଝି ନ ଥିବେ ଯେ ମା' ତାଙ୍କ ଭାଇଙ୍କ ଘରକୁ ଯାଇଥିଲେ ଯାଇଥିବେ !

ସୁଧୁ—ନ ଯାଇ ଥିଲେ ବି ନ ଯାଇଥିବେ—ଏକଥା ବି ସେ ବୁଝିଚନ୍ତି । ମା' ଭୁବନେଶ୍ୱର ଭାଇଙ୍କ ଘରକୁ ଯାଇଚନ୍ତି—କି ତାଙ୍କ ଶୋଇଲା ଘରେ ଶୋଇଚନ୍ତି କି ସାଇଆଡ଼େ କୁଆଡ଼େ ବୁଲି ଯାଇଚନ୍ତି—ବାବୁଙ୍କ ମନରେ ଏଇ କଥାଟା ଏପାଖ ସେପାଖ ହୋଇ ଖେଳୁଚି ।

ସାଧୁ—ତୁ ଗୋଟାଏ ମସ୍ତଙ୍କ ଭଳିଆ ଏଇଠି ବସି ତାଙ୍କ ମନକଥା ସବୁ ଜାଣି ପକେଇଚୁ !!

ସାଧୁ—ହଁ ଜାଣିଚି । ତା’ ନହେଲେ ଦେଖୁନ—ବାବୁ ସେତିକ ବେଳୁ ସେମିତି ଗୁମ୍ କରି ବସିଚନ୍ତି । ମା’ଙ୍କୁ ତ ଡାକୁ ନାହାନ୍ତି—ଆମକୁ କାହାକୁ ବି ଡାକୁ ନାହାନ୍ତି ।

ସାଧୁ—ନ ଡାକିଲେ ଛଳ ନାହିଁ—ଆମେ ଚାଲନ୍ତୁ, ସତକଥାଟା କହିଦବା ।

ସାଧୁ—ତେମେ ଏମିତି ବଡ଼ୁଆ ଭାହିଁକି ହଉଚ ? ସେ କ’ଣ ଜାଣିବେ ନାହିଁ ଏ କଥା—ତାଙ୍କ ପାଖରେ ଅଛପା ହେଇ ରହିବ ? ହେଲେ, ଆମେ ଏଇନେ ଉପରେ ପଡ଼ିଯାଇ କହିଲେ ତାଙ୍କ ମନ କଷ୍ଟହବ । କହିବେ—ସିଏତ ତାଙ୍କର ଗଲେ—ଆଉ, ଏ ଦ’ଟାଙ୍କୁ ଦେଖ—ଆସି କେମିତି ଭଲେଇ ହଉଚନ୍ତି !! ସତରେ ଏକା ଭାଇନା, ବାବୁଙ୍କ ମନରେ କଷ୍ଟହବ ।

ସାଧୁ—ମତେ ଏ ମାଇଚିଆ କଥା ଗୁଣ୍ଡିକ ଭଲ ଲାଗେ ନାହିଁ । ଦୁନିଆରେ ସବୁ ଝିଅ ବାପ ଘରକୁ ଯା’ନ୍ତି, ଇଏ ଗଲେ... ମନରେ କଷ୍ଟଟାଏ କ’ଣ ହବ ?

ସାଧୁ—ଆରେ ! ଇଏ କଣ ଗଲ ଭଳିଆ ଗଲେ !! ଆମ, ତମ କଥା ଦୋସର । ଆମେ ଚାରଦିନ ଘରଗୁଡ଼ ବିଦେଶରେ ରହୁଚୁ—ଇଏ ଆମକୁ ପୋଚେଇ ଗଲଣି । ଯିଏ ମୂଳରୁ କୁଟୁମ୍ବ ପରିବାର ଧେଇ ଚଳୁଚନ୍ତି, ତାଙ୍କୁ ଦଶ ଦିନେ ଅନ୍ତର ହେଇଗଲେ ସଂସାର ପିଠା ଲାଗିବ—ଦଣ୍ଡକ ଯୁଗ ହୋଇଯିବ । ମୁଁ କଣ ଆମ ବାବୁଙ୍କୁ—ମା’ଙ୍କୁ ଚହିନି-ନାହିଁ ?

ସାଧୁ—ସିଏ ପୁଣି ତେଣେ କେମିତି ରହୁଥିବେ ?

ସାଧୁ—ରହୁଥିବେ ଆଉ କ'ଣ ? ଏମିତି କୋଉଠି ଗୁମ୍ ହୋଇ ବସିଥିବେ । ଭାଇ—ଭାଉଜ, ଭଣଜା, ଭାଣିଜୀ, ସବୁ ତୁଚ୍ଛ !

ସାଧୁ—ହୁଁ !! କଥାରେ କହନ୍ତି—ନ ଦେଖିଲା ଲୋକ ଦେଖ— କଉଁଛ କାଢ଼ିନ ଦେକ !! ଇଏ ସେଇ ନ୍ୟାୟ୍ୟ ହଉଛି ।

ସାଧୁ—ଆରେ ବାବୁ, ଆମେ ଗରୁକର ପୁଅଝିଏ ଲୋକ—ଆମ ହୁସିଆରରେ ଆମେ ରହୁବା । ତେମେ ଗୁହା ଚୁଲ ଲଗାଅ— ମୋ' ଆଉକୁ ଘରିବା ଡାଳଟା ବଢ଼େଇ ଦିଅ—ମୁଁ ପଶିବା କାଟି ବସେ । ବାବୁ ଡାକଲେ ରହ ସହ ସବୁ କଥା ତାଙ୍କୁ କହିବ । ମା' ଯଦି କହୁ ଯୋଛୁ ଭଲରେ ଭଲରେ ଯାଇ ଥାନ୍ତେ—

ସାଧୁ—କ'ଣ ଗୋଟାଏ ମନ୍ଦରେ ଯାଇଚନ୍ତି !! ଯାଇ ଯାଇ ତ ବାପ ଭାଇ ଘରକୁ ଯାଇଚନ୍ତି—ସେଥିରେ କ'ଣ ଏମିତି ଦୁନିଆ ଓଲଟି ଗଲା ?

ସାଧୁ—ମା'ଙ୍କର ଏମିତି ଯିବାଟା କଣ ଫାବଚ ?

ସାଧୁ—ଅଲବତ୍ ଫାବଚ । ଆଜକାଲ ଯୁଗଯାଇ କୋଉଠି ହେଲଣି—ଇଏ କହୁଚ କଣନା!—

ସାଧୁ—ହେଇତ ଭାଇନା—ଯାହା ମୁଣ୍ଡରେ ଗୋବର ଅଛି, ତାକୁ ଏଯୁଗ ସୁନ୍ଦର ଦିଶୁଚ । ଆମକୁ ନୁହେଁ ।

ସାଧୁ—(ଜୋର୍ ଗଳାରେ) ସାଧୁ !

ସାଧୁ— କାହିଁ ଗୋଟାଏ ପାଟି କରୁଚମ ?

ସାଧୁ—ପାଟି କରିବନି—ତରିବ ? ତୁ ଏଡ଼େ ବୁଦ୍ଧିଆ ! ଆଉ ସମସ୍ତେ ନିର୍ବୁଦ୍ଧିଆ—ମୂର୍ଖ !!

ଗୋବର୍ଦ୍ଧନ—(ଡୂରନ୍ତୁ) ସାଧୁ !

ସାଧୁ—ହେଇତ ଡାକଲେଣି, ସମ୍ଭାଳ ।

ସାଧୁ—କଣ ସମ୍ଭାଳିବ ? ଡାକଲେଣିତ ଯିବ—ସମ୍ଭାଳିବ କଣ ?

(କିନ୍ତୁ ସାଧୁ ଯିବା ପୂର୍ବରୁ ଗୋବର୍ଦ୍ଧନ ନିଜେ ଆସିଲେ)

ଗୋବ—ସାଧୁ ।

ସାଧୁ—ଆଜ୍ଞା ।

ଗୋବ—କଣ ଫାଟି ହଉଥିଲ ?

ସାଧୁ—ନାଇଁ ଆଜ୍ଞା ଏଇ···

ଗୋବ—ସାଧୁ !

ସାଧୁ—ଆଜ୍ଞା ।

ଗୋବ—କଣ ସବୁ ହଉଚି ?

ସାଧୁ—ନାଇ ଆଜ୍ଞା ଭଉନା ଘ୍ର ପାଣି ବସଉଥିଲେ—ମୁଁ ପରିବା କାଟିବାକୁ ଯାଉଥିଲି ।

ଗୋବ—ବିଜୁ ଇତ କାଇଁ ଦିଶୁ ନାହାନ୍ତି ?

ସାଧୁ—ବିଜୁବାବୁ ସେ ଘରେ ଶୋଇ ପଡ଼ିଛନ୍ତି ।

ଗୋବ—ଶୋଇ ପଡ଼ିବ ? ଏ ସଞ୍ଜ ବେଳଟାରେ ଶୋଇଚି କାହିଁକି ?

ସାଧୁ—ତାଙ୍କ ସୀତା ମାଉସୀ ଆସିଥିଲେ ଯେ—

ଗୋବ—ସୀତା ଦେଈ ଆସିଥିଲେ ?

ସାଧୁ—ହଁ । ତାଙ୍କର ପାଖରେ ବସି କଥା ଶୁଣୁ ଶୁଣୁ ସାନବାବୁ ଶୋଇ ପଡ଼ିଲେ ।

ଗୋବ—ସୀତା ଦେଈ ଗଲେଣି ?

ସାଧୁ—ହଁ । ଏଇ ଗୋଡ଼କୁ ଗୋଡ଼—ଆପଣଙ୍କ ଆସିବା ଆଗରୁତ ଗଲେ । ତାଙ୍କ ପୁଅଟାଏ ଆସି କାହିଁକି ଡାକିଲା ।

ଗୋବ—ଇଚ୍ଛ କାହିଁ ?
ସାଧୁ—ଇଚ୍ଛ ମା'ଙ୍କ—
ଗୋବ—କୁଆଡ଼େ ଯାଇଚ ?
ସାଧୁ—ଇଚ୍ଛ ମା' ପରା ଭୁବନେଶ୍ୱର ଯାଇଛନ୍ତି ବାବୁ ।
ଗୋବ—ହୁଁ । କେତେବେଳେ ସବୁ ଗଲେ ?
ସାଧୁ—କେତେବେଳେ—ଗଲେରେ ସାଧୁ ? ବାରଟା ଗାଡ଼ିରେ ହବପରା । ହଁ ଆଜ୍ଞା, ବାରଟା ବସ୍‌ରେ ତ ଗଲେ ।
ଗୋବ—ଇଚ୍ଛତ ସ୍କୁଲକୁ ଯାଇଥିଲା—ଆସିଲା କେମିତି ?
ସାଧୁ—ମା'ଏଠି ଲେଖି ତାଙ୍କୁ ଇସ୍କୁଲରୁ ଡକେଇ ପଠେଇଲେ । ଏଇ ସାଧୁ ତ ଯାଇ ଡାକି ଆଣିଲା ।
ଗୋଧୁ—ହୁଁ । ତାହାଲେ ଇଚ୍ଛକୁ ସାଥିରେ ନେଇ ଯାଇଛନ୍ତି ?
ସାଧୁ—ଆଜ୍ଞା !
ଗୋବ—ହଉ, ତେମେ ତମ କାମକର ।
ସାଧୁ—ଆପଣ ମୁହଁ ଧୋଇବେ ନାହିଁ ?
ଗୋବ—ଧୋଇଚ ।
ସାଧୁ—ଚା କରୁଚ ?
ଗୋବ—(ଚିଡ଼ଯାଇ) ମତେ ନ ପଚାରିଲେ କ'ଣ ଚା' ପାଣି ଗରମ ହବ ନାହିଁ ନା, ଚା' ପତ୍ର ସିଝିବ ନାହିଁ ! (ଚାଲିଗଲେ)
ସାଧୁ—ଦେଖିଲଟି ଭାଇନା !
ସାଧୁ—ଆମ ଉପରେ ଚିଡ଼ିଲେ କଣ ହେବ ? ଆମେ କ'ଣ ମା'ଙ୍କୁ ଶିଖେଇ ମଣେଇ ପଠେଇ ଦେଲୁ କି ?
ସାଧୁ—ସେକଥା ପଡଚ ! ମୁଁ ଯାହା କହୁଥିଲି—ମା' ଏମିତି ଆଗପଛ ନବଚାରି ଚାଲିଗଲାରୁ ବାବୁଙ୍କ ମନରେ କଷ୍ଟ ହେଉଚ ।

ସାଧୁ—ତୁ'ତ ଅଦ୍ଭୁତକଥା କହୁଚୁ ସାଧୁ ! ଯାଇଛନ୍ତିତ ଏଇ ଭୁବନେଶ୍ୱର—ମନ ଦୃହିଲେ ଆଉ ଘଡ଼ିକୁ ପୁଣି ଆସି ହାଜର ।

ସାଧୁ—ଏଇ ଘଡ଼ିକ ପୁଣି ସମ୍ଭାଳିବ କିଏ ? ଆମେ ବ'ନ୍ଧାଟା ଗୃହର ପୁଙ୍ଖାଣୁ ଅଛୁଁ—ହେଲେ ତେମେ କଣ ଜାଣିନ—ମା କେମିତି ସବୁ କଥାକୁ ହାଜର ହେଉଥାନ୍ତି । ସାଧୁ ଏଇଟା କର—ସାଧୁ ଏଇଟା ଅଣ—ତାଙ୍କ ପାଟି ବନ୍ଦ ହେଲେ ଆମ କାମବନ୍ଦ ।

ସାଧୁ—ଯା' ବୋଲି ତାଙ୍କର ଆଉ ଉକତ ମାଜିଁସର ଦେହ ନୁହେଁ ! ତାଙ୍କର ଆଉ ସେଗ ଦ୍ୱେଷ ହାନି ଲାଭ କିଛି ନାହିଁ !! ସବୁଦିନେ ଗୃହର ସାଙ୍ଗରେ ଗୃହର ହୋଇ ଦିନ ରାତି ଖଟିବାକୁ ଏଠି ଇସ୍ତମରାସ୍ ପଟ୍ଟା ଲେଖି ଦେଇଛନ୍ତି !!

ସାଧୁ—ଶୁଣ । ଏ କଥା ପୁଣି କହିବ କିଏ ? ଘରର ଘରଣୀ-- ତାଙ୍କ ଘରକାମ ସିଏ ନ ବୁଲେଇ ଆଉ ପୁଣି କିଏ ବୁଲେଇବ ?

ସାଧୁ—ସିଏତ ଘରଣୀ ବୋଲି ସବୁ ବୁଲେଇବେ ! ଆଉ ଇ ଏ ମରଦ ପୁଅ—ଘରର ମାଲିକ ହୋଇଚନ୍ତି—ଖାଲି ତାଙ୍କ ଉପରେ ହାକିମି ଚଳେଇବେ—ନା ?

ସାଧୁ—ଗ୍ଲଡ଼ । କହୁଚ ପରା—ତମ ମୁଣ୍ଡରେ—

ସାଧୁ—ସାଧୁଆ !

ସାଧୁ—ନାହିଁ ହୋ—ମୁଁ ତମକୁ କିଛି କହୁନ । ତମେ ଚ' ପାଣି ବସାଅ । (ସାଧୁ ବେଷଇ ଘରକୁ ଗଲ । ଟିକିଏ ପରେ ଦୂରରୁ ସନ୍ଧ୍ୟା ଆରତିର ଘଣ୍ଟାଧ୍ୱନି ଶୁଣାଗଲ । )

ସାଧୁ—ଭଲନା, ଏଇ ସଞ୍ଜଘଣ୍ଟ ବାଜଲଣି ।
ସାଧୁ—ବାଜୁ ।
ସାଧୁ—ସଞ୍ଜବତୀ ଦିଆ ହବ ନାହିଁ ? (ସାଧୁ ପୁଣି ଆସିଲା)
ସାଧୁ—ଆରେ ସତେତ ! ସଞ୍ଜକନା ବାହାର କର ।
ସାଧୁ—ମା ନାହାନ୍ତି ବୋଲି ସଞ୍ଜା ପହରଗଡ଼ ଗଲଣି—ସଞ୍ଜ ଦିଆ ହେଉନ ।
ସାଧୁ—କନା ଅଣିଲୁ ? (ସାଧୁ କନା ଅଣି ଦେଲା)
ସାଧୁ—ହଁ, ଏଇନଅ । ଚଳୁଥାଅ । ମୁଁ ଘିଅ ଘଡ଼ିଟା ଆଣେ ।
ସାଧୁ—ହଁ, ପୁର୍ତ୍ତିଆଣି । ଦୀପରେ ଘିଅ ଭର୍ତ୍ତିକର ।
ସାଧୁ—ଦୀପକାହିଁ ? ଦୀପତ ଧୁଆ ହେଉନନା, କ'ଣ ?
ସାଧୁ—ମଲଯା ! ଦୀପତ ଧୁଆ ହେଉନ ।
ସାଧୁ—ଦୀପ ଧୁଆ କାମ ସବୁ ତମର !
ସାଧୁ—ମୋର କ'ଣ ସେକଥା ହେଳ ଅଛୁ ?
ସାଧୁ—ହେଳ ହବ କେମିତି ! ମା' ସବୁ ଦୀପ ଧୋଇବାକୁ ବରାଦ ଦେଇ ନାହାନ୍ତି !!
ସାଧୁ—ଭଲଟା ସବୁ—ତୁ ଦୀପ ଧୋଇ ଅଣକ—ମୁଁ ବତୀବଳ ପକାଉଚ ! ଓଃ ! କେତେ ଟାଣ କନା ହେଉଚବା—ଅଙ୍ଗୁଠିରେ ଛୁଣ୍ଡୁନାହିଁ !! (ସାଧୁ ବତୀ ବଳ ବସିଲ ସାଧୁ ଭିତରକୁ ଯାଇ କିଛି ସମୟ ପରେ ଦୀପ ନେଇ ଆସିଲ )
ସାଧୁ—କାଓ, ଭଲନା ଇଏ କଣ ? ଇଏ ଗୃଖଣ୍ଡେ ଲମ୍ବ ଗୃର ଅଙ୍ଗୁଳ ଓସାର କନାରେ କଣ ଗୋଟାଏ ଲେଖାଁଏ ବତୀ ବଳୁଚ ? ଇଏ ଦୀପ ଜଳିବ ନା ମଶାଲ ଜଳିବ ?
ସାଧୁ—ଅରେ ହଁ, ସେ ଠିକହବ । ତୁ ପାଟି କରନା ।
ସାଧୁ—ହଉ ଦିଅ । ଝଟ ଝଟ ବଳାଯିବ । କେତେ ବଳଲଣି ?

ସାଧୁ—ଏଇ-ନେ । ଗଣ । କେତେ'ଣ୍ଡା ହେଲା ?

ଘଧୁ—ଏଇତ ଛ'ଣ୍ଡା ଦ'ଣ୍ଟା । ଆଉ କେତେ ବଳିବ ?

ସାଧୁ—ଥଳି ? ଅରେ ହେ ଘଧୁ, ମୋଟରେ କେତେ ସଙ୍ଗ ବଳାହେବ ମୁଁ ତ ଜାଣିନି ।

ଘଧୁ—ଜାଣିନ ? ତେମେ ପଣ୍ଟା ବେଳେବେଳେ ଫଜବତି ଦିଅ ।

ସାଧୁ—ମୁଁ ସିନା କେବେ କୋଉଦିନ ଠାକୁରଙ୍କ ପାଖରେ ନେଇ· ଥୋଇଦିଏ—ହେଲେ ପୁରା ହିସାବତ ମତେ ଜଣାନାହିଁ ।

ଘଧୁ—ହିସାବ ଏବେ କରି ପକାଉନ ?

ସାଧୁ—କି ହିସାବ କରିବ ? କୋଉ ଠାକୁରଙ୍କ ପାଖରେ କେତେ· ଦିଅଛିଏ ମୁଁ କଣ ଜାଣିଚି ?

ଘଧୁ—ଏଇତକ କାମତ ଜାଣିନ, ରୋଜ ସକାଳେ—ଘଣ୍ଟେ· ଘଣ୍ଟାଏ ଲେଖାଏ ବସି କ ପୂଜା ପାଠ କର ?

ସାଧୁ—ହଉ,ତୁ ଆ । ଏଇ ଯେତକ ହେଲାଣି ସେତକରେ କାମ ଚଳେଇ ଦବା ।

ଘଧୁ—ଏ ଅଧର୍ମ କାମ ମୋଦେଇ ହବ ନାହିଁରେ ବାବା !!
(ଚାଲିଯାଉ ଥିବ) ।

ସାଧୁ—ଏ ଘଧୁ, ଶୁଣ । କୁଆଡ଼େ ଯାଉଚୁ ?

ଘଧୁ—ତମେତ ଅଛ—ମୁଁ ଆଉ କଣ କରିବ ?

ସାଧୁ—ତୁ ଗଲ୍ଲ ବାବୁଙ୍କୁ ପଚାରିବୁ ।

ଘଧୁ— କଣ ?

ସାଧୁ—ଏଇ ଫଜବତି ହିସାବ—

ଘଧୁ—ଭଲନା, ତେମେ ଦେଖୁଚ ଚନ୍ଦନ ଆଉ ପୋଛୁଚ କାଠ ? ମୁଁ ଯାଇଁ ବାବୁଙ୍କୁ ଏକଥା ପଚାରିବ ?

ସାଧୁ—ସତ୍ତ୍ୱରବୁ ନାହିଁ କାହିଁକି ?

ରାଧୁ—ଇଏ ଘରର ଘରଣୀଙ୍କକାମ । ସିଏ ପୁରୁଷ ପୁଅ, ଜାଣନ୍ତି କଣ ?

ସାଧୁ—ଜାଣନ୍ତି ନାହିଁତ ଘରଟିଏ ବାନ୍ଧଛନ୍ତି କାହିଁକି ?

ରାଧୁ—ମୁଁ ଆଉ ମିଛରେ କହୁଥିଲିକି ଭଉନା, ତମ ମୁଣ୍ଡରେ—ଗୋବର ଅଛି !

ସାଧୁ—(ରଡିଯାଇ) ରାଧୁଆ............(ଏତିକବେଳେ ପୁଣି ଗୋବର୍ଦ୍ଧନ ବାବୁ ଆସିଲେ)

ଗୋବ—ରାଧୁ ! କଣ ଏଠି ହଉଚ ? କାହିଁକି ତେମେ ଦ'ହେଁ ଏମିତ ହଉଚ ?

ସାଧୁ—ନାହିଁ ଅଜ୍ଞା—

ଗୋବ—କଣ ଅଜ୍ଞା, ଅଜ୍ଞା ହଉଚ ?

ସାଧୁ—ନାହିଁ ଅଜ୍ଞା, ଫଳବଗିଚା ଦେଆ ହବଯେ—

ଗୋବ—ଫଳବଗିଚା ଦବ । ଆଉ ପାଟି କାହିଁକି କରୁଚ ?

ସାଧୁ—ମୋଟରେ କେତେଟେଣ୍ଡା ଫଳ ଲାଗିବ ଅଜ୍ଞା ?

ଗୋବ—ସେକଥା ମୁଁ କହିବି ? ମୁଁ ଜାଣେ କୋଉଠି କେତେ ଫଳ ଦେଆ ହୁଏ ?

ସାଧୁ—ଛ'ଣ୍ଡା ଦ'ହେଁ ବଳିବ । ସେଇଥିରେ—

ଗୋବ—(ଚିଡ଼ି ଉଠି) ତମେ ଛ'ହଜାର ଗଣ୍ଡା ବଳିଲେ ମୋର ଆପତ୍ତି ନାହିଁ । ଯାହା କରୁଚ କର । (ଚାଲିଗଲେ)

ସାଧୁ—ହଇରେ ରାଧୁ, ବାବୁ ମୋ ଉପରେ କାହିଁକି ଏମିତ ଚିଡ଼ି ଚିଡ଼ି ହଉଚନ୍ତି ?

ସାଧୁ—ତେମେ କାହିଁକି ତାଙ୍କ ପାଖରେ ଭଲେଇ ହେଉଥିଲ ?

(ଏମାନେ ଏମିତି କଳି କରୁଥିବା ବେଳେ ପଡ଼ଶା ଘରର ସୀତାଦେଈ ଆସି ଏମାନଙ୍କ ଅଲକ୍ଷ୍ୟରେ ସଜବତୀ ଦବା କାମ ଆରମ୍ଭ କରି ଦେଲେଣି)

ସାଧୁ—ଭଲେଇ ହେଲ କଣ ? ସଜ ହିସାବଟାତ ପଚାରୁଥିଲି— ଭଲେଇ ହେଲ କଣ ? ମଲ—ସଜକଣ ଦିଆ ହେଲଣି ?

ସାଧୁ—ଏଇପରା ସୀତାଦେଈ ଆସି ସଜ ଦଉଚନ୍ତି ।

ସୀତା—ହଁ ପୁଅଟା, ତମ ମା ଗଲବେଳେ ସଜବତୀ କାମ କଡ଼େଇ ଦବାକୁ ମତେ କହି ଯାଇଥିଲେ ।

ସାଧୁ—କେତେ ସଜ ଦିଆଯାଏ ତେମେ ଜାଣିଚ ମା ?

ସୀତା—ହଁ, ହଁ, ମୁଁ ଜାଣିଚି । ବଜୁ ଶୋଇଚ ?

ସାଧୁ—ହଁ' ଶୋଇଚନ୍ତି ।

ସୀତା—ଶୋଇଥାଉ । ତାକୁ ଉଠାଅନା ।

ସାଧୁ—ହେଇତ ମା ! ବାବୁ ଅଫିସରୁ ଆସି ସେତକ ବେଳୁ ସେମିତି ବଇଚନ୍ତି !

ସୀତା—ବସିଥାନ୍ତୁ ! ମୋର କଣ ଗଲ ? କଳି କଜିଆ କରି ଇଡ଼ ବୋଉକୁ ତ ଘଉଡ଼ି ଦେଲେ ! ହାତ ଗୋଡ଼ ବାନ୍ଧି ବସିଥାନ୍ତୁ । ମୁଁ ଦାଣ୍ଡ ଦୁଆରେ ସଜଦେଇ ସିଆଡ଼େ ଆମ ଘରକୁ ଯିବି । ତେମେ ଟିକିଏ ଶଙ୍ଖଟା ଫୁଙ୍କିଦିଅ ।

(ସୀତାଦେଈ ଚାଲି ଗଲେ । ସାଧୁ ଶଙ୍ଖ ଫୁଙ୍କିଲା ।-ବଜୁ ଘର ଭିତରୁ କଥା କହି କହି ଉଠି ଆସିଲା)

ବଜ୍ରୁ—ବୋଉ, ବୋଉ ! ତୁ ଆଇଲୁଣି ବୋଉ ?

ଗଧୁ—ସାନବାବୁ ! ତେମେ ଉଠିଲଣି ସାନବାବୁ ?

ବଜ୍ରୁ—ହଁ । ବୋଉ କାଇଁ ?

ଗଧୁ—ବୋଉତ ଆସିନାହାନ୍ତି ।

ବଜ୍ରୁ—ହଁ, ଆସିଚ । ମୁଁ ଶୁଣିଚ ପରା—ବୋଉ କହୁଥିଲ—ପୁଝାରୀ ଶଙ୍ଖଟା ପୁଙ୍କିଦଅ ।

ଗଧୁ—ନାଇଁ ସାନବାବୁ ବୋଉ ଆସି ନାହାନ୍ତି । ତମ ସୀତା ମାଉସୀ ଆସିଥିଲେ ।

ବଜ୍ରୁ—ବୋଉ କେତେବେଳେ ଆସିବ ?

ଗୋବ—ବଜ୍ରୁ—ବଜ୍ରୁ ! (ଗୋବର୍ଦ୍ଧନ ଆସିଲେ । ସାଧୁ ଓ ଗଧୁ ଚାଲିଗଲେ)

ବଜ୍ରୁ—ବାପା ! ତମେ ଅଫିସରୁ ଆସିଲଣି ବାପା ?

ଗୋବ—ହଁ । ତୁ ଏ ସଞ୍ଜ ବେଳଟାରେ ଶୋଇଥିଲୁ କାହିଁକ ?

ବଜ୍ରୁ—ସୀତା ମାଉସୀ ମତେ ଗପ କହୁ କହୁ ଶୁଆଇ ପକେଇଲେ । ବୋଉ କାଇଁ ବାପା ?

ଗୋବ—ବୋଉ କୁଆଡ଼େ ଯାଇଚ ତୁ ଜାଣିନୁ ?

ବଜ୍ରୁ—ବୋଉ ମାମୁଁଙ୍କ ପାଖକୁ ଭୁବନେଶ୍ୱର ଯାଇଚ ପରା । ଆସିନାଇଁ ?

ଗୋବ—ନାଇଁ । ବୋଉ ଆଉ ଆସିବ ନାଇଁ ।

ବଜ୍ରୁ—ଆସିବ ନାଇଁ ! ହଉ । (ବଡ଼ପାଟିରେ) ଗଧୁ-ଗଧୁ—ମୋ ଘୋଡା କ'ଣ ହେଲ ?

ଗଧୁ—(ଦୂରରୁ) ଘୋଡା ପରା ସେଇ ଥାକରେ ଥୁଆ ହେଇଚ ସାନବାବୁ ।

ବଜ୍ରୁ—ହଁ, ପାଇଲଣି । ବାପା ! ମୋଜା ପିନ୍ଧିବ ବାପା—ନା ଖାଲି ଜୋତା ପିନ୍ଧିବ ? (କହି କହି ଘର ଭିତରକୁ ଚାଲିଗଲା)

ଗୋବ—ଏ ସଜ ବେଳାଟାରେ ଜୋତା ମୋଜା ପିନ୍ଧୁଚୁ କାହିଁକି ? ଏ ବଜ୍ରୁ ?

ବଜ୍ରୁ—ଯାଉଚି ବାପା (ବଜ୍ରୁ ପୂର୍ଣ୍ଣ ପୋଷାକ ପିନ୍ଧି ଆସିଲା)

ଗୋବ—କରେ ଏ' କଣ ? ଏମିତ ଫିଟ୍ ଫାଟ ହୋଇ କୁଆଡ଼େ ବାହାରିଲୁଣି ?

ବଜ୍ରୁ—ଏ ହାଓ୍ୱାନଟା ହବ କି ନାହିଁ ଦେଖିଲ ବାପା—ଧୋବ ହାଓ୍ୱାନଟା—ଅଜ ଦନକ ମୋଟେ ଚିହ୍ନଚି—ଜଲେବ ନାହିଁ ?

ଗୋବ—ଚଳିବଇ । ହେଲେ ତୁ ବାହାରିଚୁ କୁଆଡ଼େ ?

ବଜ୍ରୁ—ଯିବାପରା ?

ଗୋବ—କୁଆଡ଼େ ?

ବଜ୍ରୁ—ଭୁବନେଶ୍ୱର—ମାମୁଁଙ୍କ ଘରକୁ ।

ଗୋବ—ଆମେ କାହିଁକି ସେଠିକି ଯିବା ?

ବଜ୍ରୁ—ବୋଉ ସଜବେଳେ ଆସିବ ବୋଲି କହିଥିଲା—ଆସିଲା ନାହିଁ । ଆମେ ତା' ପାଖକୁ ମାମୁଁଙ୍କ ଘରକୁ ଚାଲିଯିବା ।

ଗୋବ—ବୋଉ ସଜବେଳେ ଆସିବ ବୋଲି ତୁ କେମିତ ଜାଣିଲୁ ? କିଏ ତୋତେ ଏ କଥା କହିଲା ?

ବଜ୍ରୁ—ସୀତା ମାଉସୀ ! ସେଇତ ମତେ କହିଲେ—ତୁ କାନ୍ଦନା ବଜ୍ରୁ—ବୋଉ ତୋ'ର ସଜ ବେଳକୁ ଆସିବ । ମୁଁ କହିଲି ଯଦି ନଆସେ ? ସେ କହିଲେ—ନ ଆସିଲେ ବାପା ଆଉ ତୁ ଭୁବନେଶ୍ୱର ଚାଲିଯିବ ।

ଗୋବ—ହୁଁ ସୀତା ମାଉସୀ ତା' ହେଲେ ତୋ' କାନରେ ମନ୍ତ୍ର ଫୁଙ୍କି ଦେଇ ଯାଇଚନ୍ତି ?

ବଜୁ—ହିଁ ।

ଗୋବ—ସେ ତୋତେ ମିଛ କହିଚନ୍ତି ।

ବଜୁ—କ'ଣ ମିଛ ?

ଗୋବ—ବୋଉ ଅସିବ ନାହିଁକି—ଆମେ ଭୁବନେଶ୍ୱର ଯିବା ନାହିଁ ।

ବଜୁ—ମିଛ—ମିଛ—ମିଛ—ତମେ ମିଛ କହୁଚ । ତମେ ମତେ ଭୁଲେଇ ଦଉଚ । ଆମେ ନିଶ୍ଚେ ଯିବା-ବୋଉ ନିଶ୍ଚେ ଆସିବ ।

ଗୋବ—ଅଚ୍ଛା । ମୋ' କଥା ତୁ ଆଗେ ଶୁଣ । ବୋଉ ଯେତେବେଳେ ଗଲା, ତୁ କେଉଁଠି ଥିଲୁ ?

ବଜୁ—ବୋଉ କେତେବେଳେ ଗଲା ?

ଗୋବ—ବାରଟା ବେଳେ ଗଲା ପରା ।

ବଜୁ—ମୁଁ ଇସ୍କୁଲରେ ଥିଲି ।

ଗୋବ—ଅପା କେଉଁଠି ଥିଲା ଜାଣୁ ?

ବଜୁ—ତା' ଇସ୍କୁଲରେ ଥିବ । ଦଶଟା ବେଳେତ ଆମେ ଦହେଁ ସାଙ୍ଗ ହେଇ ଇସ୍କୁଲ ବାହାରିଲୁ—

ଗୋବ—ତେବେ ବୋଉ କଥା ଦେଖ୍ । ସେ ଭୁବନେଶ୍ୱର ଗଲାବେଳେ ସ୍କୁଲରୁ ତତେ ଡକେଇଲା ନାହିଁକି କିଛି କହି କରି ଗଲା ନାହିଁ ।

ବଜୁ—ମୁଁ ଜାଣେ ନା—ସେ ଘର ଗୃହଲକ୍ । ମତେ ଡକେଇ ଥିଲେ ମୁଁ କଣ ତାକୁ ଛାଡ଼ି ଥାନ୍ତି ? ତା' ସାଙ୍ଗରେ ମୁଁ ନିଶ୍ଚେ ଭୁବନେଶ୍ୱର ଯାଇ ଥା'ନ୍ତି ।

ଗୋବ—କାହିଁକରେ ? ମୁଁ ଏଠି ଅଛି—ମୋ' ପାଖରେ ରହିବାକୁ ଭଲ ଲାଗିବ ନାହିଁ ?

ବଜ୍ରୁ—(ଅଳିକରି) ନାହିଁ ବାପା ତମେ ଚାଲ । ଡେରି ହୋଇ ଯାଉଚି, ଚଞ୍ଚଳ ଚାଲ । ଉଠ—ମଟର ଛାଡ଼ି ଦବଣି, ଉଠ । ଏଇ ଗୋଟାଏ ଖାଲି ରିକ୍ସା ଯାଉଚି—(ବଡ଼ ପାଟିରେ) ରିକ୍ସା ଏ ରିକ୍ସା…

ଗୋବ—ବଜ୍ରୁ ! ଏଟିକି ଆ—ଶୁଣ ।

ବଜ୍ରୁ—ରିକ୍ସା ପଳେଇଲା ବାପା ।

ଗୋବ—ଯାଉ, ତୁ ଶୁଣ । ହଇରେ, ବୋଉ ତୋତେ କିଛି ନ କହି ଲୁଚି କରି ପଳେଇଲା—ତୁ ପୁଣି ତା' ପାଖକୁ ଯିବୁ ?

ବଜ୍ରୁ—ହଁ, ଯିବି । ତମେ ଆସ ।

ଗୋବ—ସେଠିକି ଯିବାକୁ ତୋତେ ଲାଜ ମାଡ଼ିବ ନାହିଁ ? ଆମକୁ ନେଲା —ତତେ ନେଲା ନାହିଁ !

ବଜ୍ରୁ—ତମେ ବୋଉ ପାଖକୁ ଚାଲ—ଦେଖିବ—ଆପେ ଆପେ ଛାଡ଼ି ଚାଲି ଆଇଚି,…ମୁଁ ତା'ଠୁ ଟଙ୍କେ ଜରିମାନା ଆଦାୟ କରିବି ।

ଗୋବ—ଟଙ୍କା ନବୁଟି ? ଏଇ, ନେ—ମୁଁ ଦଉଚି—ଟଙ୍କାଏ !

ବଜ୍ରୁ—ନା-ନା । ମୋର ଟଙ୍କା ଦର୍କାର ନାହିଁ । ମୁଁ ବୋଉ ପାଖକୁ ଯିବି ।

(ଏତିକି ବେଳେ ସୀତା ଦେଈ ପୁଣି ଆସିଲେ । ସେ ଗୋବର୍ଦ୍ଧନଙ୍କ ପାଇଁ ଚା ନେଇ ଆସିଚନ୍ତି ।)

ସୀତା—ହଁରେ ବଜ୍ରୁ, ତୁ ତୋ ବୋଉ ପାଖକୁ ଯିବୁ । ବାସ୍‌ତ ଘଣ୍ଟାଏରୁ ଉପର ଡେର ଅଛି । ତୋ ସାର୍‌ ଆସିଲେଣି— ତୁ ଏଇନେ ଯା’ ପଢ଼ ।

ଗୋବ—ଯା’ ବଜ୍ରୁ । ସାର ଆସିଲେଣି— ପଢ଼ିବୁ ଯା ।

ବଜ୍ରୁ—ପଢ଼ି ସାରିଲେ ଯିବାତ ?

ସୀତା—ହଁ ପର୍‌—ଯିବୁ । ଯା’ ଏଇନେ ପଢ଼ । (ବଜ୍ରୁ ଗୁଲଗଲା । ଗୋବର୍ଦ୍ଧନ ଓ ସୀତା ଦେଈ ଦୁଇଟା ଚୌକୀ ଟାଣିଆଣି ବସିଲେ)

ଗୋବ—ବଡ ଆଶ୍ଚର୍ଯ୍ୟ କଥା ସୀତା ଦେବୀ !

ସୀତା—କଣ ?

ଗୋବ—ବଜ୍ରୁ ମୋ’ କଥା ଆଦୌ ଶୁଣୁ ନାହିଁ । ଅଥଚ ଆପଣଙ୍କ କଥା ସୁନା ପିଲାଟି ପରି ମାନି ନେଲା !

ସୀତା—ମୋ’ କଥା ନ ମାନିଲା ଭଲ କରୁ ତ ମୁଁ ତାକୁ କହୁନି— ନ ମାନିବ କାହିଁକି ? ଆପଣଙ୍କ ଚା’ ଥଣ୍ଡା ହୋଇ ଯାଉଚି—

ଗୋବ—ଚା’ ଆପଣ ମୋ ପାଇଁ ଆଣିଲେ ?

ସୀତା—ହଁ । କିନ୍ତୁ ଆମ ଘରୁ ନୁହେଁ—ଆପଣଙ୍କ ରୋଷେଇ ଘରୁ ଆଣିଲି ।

ଗୋବ—ସେ କଥା ବେଶ୍ ବୁଝି ପାରୁଚି, କିନ୍ତୁ ଆପଣ କାହିଁକି ଆଣିଲେ ?

ସୀତା—ଆପଣ ଖାଇବେ ବୋଲି ।

ଗୋବ—ମୋ’ ପ୍ରଶ୍ନର ଏଇ ଅର୍ଥ ଆପଣ ବୁଝିଲେ ?

ସୀତା—ଯେଉଁଠି ହୃଏତ କୌଣସି ପ୍ରଶ୍ନ ଉଠି ପାରେନା—ସେଠି ପ୍ରଶ୍ନ ପଚରା ଗଲେ, ସେଥିରୁ ନାନା ଅର୍ଥ ବାହାରେ ।

ଗୋବ—ଗୃହରୁ ଖାବେଳେ ଅପି ବଜାର ଖବର ବୁଝିଗଲେ—ପୁଣି ଫଳବଳ ଦେଲେ—ବର୍ତ୍ତମାନ ଏଇ ଅହାଚରଣ ସେବା···

ସୀତା—କାହିଁକି ଏ ସବୁ ମୁଁ କରୁଚ—ଏଇଆ ଜାଣିବାକୁ ଚାହାନ୍ତି ତ ? ଆପଣ ପୁଣି ସଜଡ଼ା ସୂତାକୁ ଅଡ଼ୁଆ କରି ସେଥିରୁ ଖିଅ ବାହାର କରିବାକୁ ବସିଲେଣି।···ଦେଖନ୍ତୁ; ସହରକେ ତ ପଡ଼ଶା ଘର—ଚାଲନ୍ତୁ ଚାଲ ଲାଗିଚି—ତା ଛଡ଼ା କୁନ୍ତଳା ମୋର ବନ୍ଧୁ ।

ଗୋବ—ହଁ ! ଆଉ ସେଇଥିପାଇଁ କୁନ୍ତଳା ଭୁବନେଶ୍ୱର ଗଲାବେଳେ ଏ ଘରର ଭାର ଆପଣଙ୍କ ଉପରେ ଦେଇ ଯାଇଚି !

ସୀତା—ନା, ଅନ୍ତତଃ ଆପଣଙ୍କ ଭାର ନୁହେଁ ।

ଗୋବ—ବିଶ୍ୱାସ କରି ପାରୁନ ।

ସୀତା—ତା ହେଲେ ସ୍ତ୍ରୀ ଜାତି ସମ୍ବନ୍ଧରେ ଅପଣଙ୍କର ଆହୁରି ଅନେକ କଥା ଜାଣିବାକୁ ବାକି ଅଛି ।

ଗୋବ—ସେ କଥା ମୁଁ ମୋଟେ ଅସ୍ୱୀକାର କରୁନି, ଜଣେ ସ୍ତ୍ରୀ ଲୋକକୁ ନେଇ ବାରବର୍ଷ ଘର ସଂସାର କଲାପରେ କେତେବେଳେ ମୋର ମନେ ହଉଚି ଆମେ ମୋଟେ ବାରଦିନର ସ୍ୱାମୀ ସ୍ତ୍ରୀ ! ଆଉ କେତେବେଳେ ଭାବୁଚି— ବିଶା-ଶହେରୁ ଉପର ବର୍ଷ ତଳେ ଆମର ବିବାହ ହୋଇଥିଲା !!

ସୀତା—ଘର—ସଂସାରଟା ଆପଣଙ୍କର ଏକଚାଟିଆ ବୋଲି ଆପଣ କାହିଁକି ଭାବୁଚନ୍ତି ? ଆପଣ କାହିଁକି ଭାବୁନାହାନ୍ତି ଯେ କୁନ୍ତଳା ମନରେ ମଧ୍ୟ ବେଳେ ବେଳେ ଠିକ୍ ଏମିତିକା ପ୍ରଶ୍ନ ଖେଳି ଯାଉଥିବ !

ଗୋବ—ତା ମନ କଥା ସିଏ ଜାଣେ । ଆଉ, ଏ ବେଢେଢଣ୍ଟା ଧରି ଆପଣ ଯେମିତ ନିଜ ଘର ପରି ଏ ଘରର ଖବର ବୁଝି ଯାଉଛନ୍ତି—ସେଥିପାଇଁ ଆପଣଙ୍କୁ ବହୁ ଧନ୍ୟବାଦ । କିନ୍ତୁ ସୀତାଦେବୀ, ଏସବୁ କଥାରୁ କ'ଣ ଏଇଆ ବୁଝା ଯାଉ ନାହିଁ ଯେ ଘରର ଘରଣୀ ଚାଲିଗଲେ ଘର ଅଚଳ—ଏଇ କଥାଟାକୁ ପ୍ରମାଣ କରିବା ପାଇଁ ଆପଣ ଓ ଅପଣଙ୍କ ବନ୍ଧୁ ମୋ' ବିରୁଦ୍ଧରେ ଏ ଅଭିଯାନ ଚଳେଇଛନ୍ତି !! ମୋ' କଥାରେ ଆପଣଙ୍କ ପ୍ରତି ଯଦି କିଛି ଅଭିଯୋଗ ଥାଏ, ସେଥିପାଇଁ ଆପଣଙ୍କଠୁଁ କ୍ଷମା ପ୍ରାର୍ଥନା କରି କଥାଟା ମୁଁ କହୁଛି—

ସୀତା—(ହସି) ଅପଣଙ୍କ କଥାଶୁଣି ମୁଁ ନହସି ରହି ପାରୁନି । ଆଉ, ମୋ' ହସରେ ଆପଣ ଯଦି ଅପମାନିତ ହୋଇଥା'ନ୍ତି—ସେଥିପାଇଁ ଆପଣଙ୍କଠୁଁ ମୁଁ ମଧ୍ୟ କ୍ଷମା ଚାହୁଁଛି । କିନ୍ତୁ ଦୁଇ ଗୁଣନ ଦୁଇ ସମାନ ଚାରି—ଏ କଥାଟା ପାଇଁ କ'ଣ ପ୍ରମାଣର ଦରକାର ?

ଗୋବ—ଦୁଇକୁ ଦୁଇରେ ଗୁଣିଲେ ଚାରିହେବ, ଏ କଥା ଠିକ୍ । କିନ୍ତୁ ଦୁଇକୁ ତିନିରେ ଗୁଣି ଚାରି ପ୍ରମାଣ କରାଇବା ଲୋକର ଅଭାବ ମଧ୍ୟ ଏ ବିଚିତ୍ର ଦୁନିଆରେ ନାହିଁ ।

ସୀତା—ବେଶ୍ ତ ! ଆପଣ ତା' ହେଲେ ପ୍ରମାଣ କରାଇ ଦିଅନ୍ତୁ ଆମେ ଯାହା କହୁଚୁ—ସେ ସବୁ ଇନ୍ଦ୍ରଜାଲର ମାୟା ! ଘରଣୀ ବିନା ଯଦି ଘର ସଂସାରର କାମ ଚଳିଯାଏ···

ଗୋବ—ଶୁଣନ୍ତୁ ସୀତାଦେବୀ ! ଘର କରିଥିଲେ ଖଣ୍ଡିଆ ଛାଞ୍ଚୁଣୀ ଖଣ୍ଡେ ବି ଲୋଡ଼ା । ଘରଣୀତ ଘରର ଲକ୍ଷ୍ମୀ !!

ସୀତା—ଆପଣଙ୍କ କଥା ଅତି ଉତ୍କଣ୍ଠ ହେଉ ଉଠୁଚି । ଉପମାଟା ଏକାନ୍ତବଲେଲେ ବୁଝଚର ବାହାରେ । (ସାଧୁ ଓ ପଛେ ପଛେ ରାଧୁ ଆସିଲ)

ସାଧୁ—ବାବୁ !

ଗୋବ—କିଏ, ସାଧୁ ?

ସାଧୁ—ଆଜ୍ଞା !

ଗୋବ—ରାଧୁ କାହିଁ ?

ରାଧୁ—ମୁଁ ଏଇଠି ଅଛୁ ଆଜ୍ଞା—

ଗୋବ—ମୁଁ ଜାଣେ, ତମେ ଦୁହେଁ ସାଥିହୋଇ ଏଠିକି ଆସିଥିବ ! କ'ଣ କହୁଚ ?

ସାଧୁ—ଗୁଡ଼ଲ କେତେ ପଡ଼ିବ ?

ଗୋବ—ଗୁଡ଼ଲ !!

ସାଧୁ—ହଁ ଆଜ୍ଞା—ଏ ବେଳା କେତେ ଗୁଡ଼ଲ ନେବ ?

ଗୋବ—ମୁଁ ଜାଣିଚି କେତେ ? ଯାହା ଯାଏ ସେତିକ ନିଅ—

ସୀତା—(ଅଳ୍ପ ହସି) ଯାହା ଯାଏ, ସେତିକ ନବ—ଯେତେ ପଡ଼େ, ସେତିକ ପକେଇବ ! ବୁଝିଲ ?

ରାଧୁ—ସବୁଦିନେ କ'ଣ ଆଜ୍ଞା ସମାନ ଗୁଡ଼ଲ ଯାଏ ? କୋଉଦିନ ବେଶୀ—କୋଉଦିନ କମ୍ ।

ଗୋବ—କାହିଁକି ? ବେଶି କମ୍ ଯାଏ କାହିଁକି ?

ସାଧୁ—କୋଉଦିନ ଇଡ଼ମା ଆଉ ସାନ ବାବୁଙ୍କ ପାଇଁ ଘରେ ଭାତ ବସେ ହୁଏ । କେବେ କେବେ ଅରଦିନ ସକାଳୁ ପଖାଳ ପାଇଁ ଗୁଡ଼ଲ ପଡ଼େ । ମା' ସେ ସବୁ ହିସାବ ଜାଣନ୍ତି ।

ଗୋବ—ମା' ଜାଣନ୍ତି ତ ?

ସୀତା—କ'ଣ ଏଇନେ ଏମାନେ ମା'ଙ୍କ ପାଖକୁ ଭୁବନେଶ୍ବର ଯାଇ ପଚାରି ଆସିବେ ?

ଗୋବ—ଏମାନେ ଏଡ଼େ ଅପଦାର୍ଥ ! ଏଇ ସାମାନ୍ୟ କଥାଟାକୁ ଖିଆଲ ରଖିପାରୁ ନାହାନ୍ତି !! ଯାଅ—ତମ ଦ'ଜଣଙ୍କ ପାଇଁ ଅନ୍ଦାଜ୍ କରି ରୋଷେଇ ଘରେ କହିଦିଅ ।

ସାଧୁ—ଆପଣ ଅଜ ରାତିରେ କ'ଣ ଖାଇବେ ?

ଗୋବ—ସାରା ଦୁନିଆଟାକୁ ଖାଇ ଯିବି !! ମୂର୍ଖ କୋଉଠିକାର ଏ କଥା ମତେ ନ ପଚାରିଲେ କ'ଣ ତମର ଚଳୁନାହିଁ ? ରାତିରେ ମୁଁ କ'ଣ ଖାଏ ?

ସାଧୁ—କୋଉଦିନ ରୁଟି—କୋଉଦିନ ପରଟା—ଦିନେ ଦିନେ ଲୁଚି କି ପୁରୀ ବି ଖାଆନ୍ତି ।

ଗୋବ—କାହିଁ କୋଉଦିନତ ମୋ' ଖାଇବା ବିଷୟ ମୁଁ କହେ ନାହିଁ !

ସାଧୁ—ଆପଣ କହନ୍ତି ନାହିଁ ସିନା—ମା' କହନ୍ତି ।

ସୀତା—ମା' କ'ଣ ବାବୁଙ୍କ ମନକଥା ଜାଣି ବିଷୟ କହନ୍ତି ?

ସାଧୁ—ଜାଣିଥିବେ । ନ ଜାଣିଲେ—

ଗୋବ—ଚୁପ—କର । ଯାଅ ଏଠୁ ।

ସାଧୁ—ତା' ହେଲେ ଯନ୍ତାରୁଟି ଦ'ଖଣ୍ଡ କରିବ ଚାକର—

ଗୋବ—(ବ୍ୟଙ୍ଗ କରି) ଦ'ଖଣ୍ଡେ ମାଲପୁଆ କରି ପାରିବ—ମାଲପୁଆ !!

ସାଧୁ—ମାଲପୁଆ !!

ସୀତା—(ହସି ହସି) ଯାଅ ପୁଝାରୀ··ବାବୁଙ୍କ ପାଇଁ ପରଟା ଦ'ଖଣ୍ଡ କର ।

ସାଧୁ—ହଜ୍ ମା ଯାଉଚ ।

ଗୋବ—ଶୁଣ ପୂଜ୍ୟାସ୍ ! ମୋ ଆଡୁ କଛି ବସାଦ ନାହିଁ । ତମ ଇଚ୍ଛା ଯାହା ହଉଚ—ଯନ୍ତ୍ରା ଲୁଚି, ଶୁଖାଲୁଚି, ନଇଲେ କୋଲଥ ଗ୍ରେପା କ ବସ ଗ୍ରେପାର ଲୁଚି କଲେ ବ ମୁଁ ଖାଇବ ! ତମେ ଯାହା କରବ ମୋର ଗ୍ରଜ । ଯାଅ ।

(ସାଧୁ ଓ ସ୍ୱାମୀର ପ୍ରସ୍ଥାନ )

ସୀତା—ମୁଁ ଓଗ୍ରଦ୍ କଲ ବୋଲ ପଲିଛା କରବାକୁ ମନା କଲେ ନା ?

ଗୋବ—ସତ କହୁଚ ସୀତା ଦେଙ୍ଗା, ମୁଁ ଏ ଅଭ୍ୟାସକୁ ଭଙ୍ଗି ଦବାକୁ ଗ୍ରହେଁ ।

ସୀତା—ଭଙ୍ଗି ଦେଇ ପାରିଲେ ଅପଣଙ୍କ କଥାଟା ସତ ବୋଲ ପ୍ରମାଣିତ ହେବ ।

ଗୋବ—କ'ଣ ଅପଣ କହୁଚନ୍ତି ?

ସୀତା—ଅପଣ କୁନ୍ତଳା ପ୍ରତ ଅନ୍ୟାୟ କରିଚନ୍ତି ।

ଗୋବ—ଅପଣ ତା' ହେଲେ ବୃହ୍ମାନ୍ତି ଯେ କଥାଟାର ବଗ୍ରର ଏଠି ହଉ ?

ସୀତା—ମୁଁ ମଧ୍ୟସ୍ଥ ସାଜ ନ ଅସିଥିଲେ ବ କଥାଟା ପଇଁ ମୁଁ ପ୍ରସ୍ତୁତ ରହିଚ । ଘରର ଘରଣୀ ସେ—ବାର ବର୍ଷର ବୋହୂ । ଫାହାଲ ଦାନ ଅପଣ ଦବମା ଗଣ୍ଡାକ ତା'ହାତକୁ ବଢ଼ାଇ ଦେଇ ମାସ ସାଗ୍ ଅପଣ ଅଫିସ୍, କ୍ଲବ୍, ବନ୍ଧୁ, ଖବରକାଗଜରେ ଦାନ କାଟନ୍ତି । ଏଠି ଅପଣଙ୍କର ସାଗ୍ ସଂସାରଟାର ବୋଝ ମୁଣ୍ଡରେ ବୋହୁ—ଗାଁର ଜମିଜମା; ଭାଇ ବନ୍ଧୁ କୁଟୁମ୍ବଙ୍କ ତତ୍ତ୍ୱବ ସେ ନଏ । ତା' ଛଡ଼ା ସଂସାରର ଗଳ୍ପ—ଅଇଳ, ଭଲମନ୍ଦ, ପିଲଙ୍କ: ଅଳ ଝଳ, ଏ ସବୁତ ଲଗି ରହିଚ ।

ଏତେ ସତ୍ତ୍ୱେ ସେ ଯଦି କେବେ ଜାଣିକରି ହଉ ବା ଭୁଲରେ ହଉ, ଆପଣଙ୍କୁ ନ ପଚାରି କିଛି ଗୋଟାଏ କରି ବସେ—ତାହାଲେ କଣ ଆପଣଙ୍କ ଦରବାରରେ ସେ ଅସାମୀ ପରି କାଠ ଗଡ଼ାରେ ଠିଆହୋଇ ଆପଣଙ୍କ ବିଚାର ଭିକ୍ଷା କରିବ ?

ଗୋବ—ଏଇ ପ୍ରଶ୍ନଟା ପଚାରି ଦେଇ ଆପଣ ନିଶ୍ଚୟ ଆଶାକରି ବସିଚନ୍ତି ଯେ ଯା'ର ଉତ୍ତରରେ ମୁଁ ସିଧା ସଳଖ ହଁଟାଏ କରିଦେବି—ଆଉ ଆପଣ ସେଇ ସୁଯୋଗରେ ଏ ଟେବଲ୍‌ରେ ହାତ ବାଡ଼େଇ, ମଥା ଝୁଙ୍କେଇ ଆଉ ଏକ ଲମ୍ବା ବକ୍ତୃତା ଆରମ୍ଭ କରିଦେବେ !!

ସୀତା—ମାନେ ?

ଗୋବ—ମୁଁ ଆପଣଙ୍କୁ ସ୍ପଷ୍ଟ କହି ରଖୁଚି ସୀତାଦେବୀ, ଆପଣ ଯଦି ଏଇ କଥାରୁ ଖିଅଟାଣି, ନାରୀ ସ୍ୱାଧୀନତାର ମହତ୍ତ୍ୱ ଏଠି ଆଲୋଚନା କରନ୍ତି—ତାହେଲେ ମୋର ଭୟ ହେଉଚି, କୁନ୍ତଳା ହୁଏତ ଏଣେ ଭୁବନେଶ୍ୱର ସ୍ୱଚ୍ଛଧାମୀ ଗ୍ଲାଉ ଖଣ୍ଡଗିରି ଗୁମ୍ଫାରେ ଆଶ୍ରୟ ନେବ । ଆଉ, ମୁଁ ଏଣେ କଟକ ଗ୍ଲାଉ କପିଳାସ ପାହାଡ଼ରେ ବାନପ୍ରସ୍ଥ ଆଚରଣ କରିବି !!

ସୀତା—(ହସି ପକେଇ) ନା, ନା, ବିଶ୍ୱାସ କରନ୍ତୁ—ସେ ସବୁର ଧାରଣା ମୋ ମନରେ ଆଦୌ ନାହିଁ । ମୁଁ ବ୍ୟକ୍ତିଗତ ଭାବେ କେବଳ କୁନ୍ତଳା କଥା କହୁଚି ।

ଗୋବ—ଧନ୍ୟବାଦ । ଆଚ୍ଛା କଥାଟା ପଡ଼ୁ । କାଲି ମୁଁ ଅଫିସରୁ ଫେରିବା ସଙ୍ଗେ ସଙ୍ଗେ ମତେ କୁହାଗଲା—"ଭାଇଙ୍କଠୁଁ ଚିଠି ଆସିଚି, ବାପା ବୋଉ ଭୁବନେଶ୍ୱର ଆସିଚନ୍ତି, ମୁଁ କାଲି ଭୋର୍ ବସ୍‌ରେ ଭୁବନେଶ୍ୱର ଯିବି; ଛ ସାତଦିନ ସେଠି

ରହିବ—ମନ୍ଦିରେ ରବିବାର ଦିନ ନ ହେଲେ ଛୁଟି ଦିନ
ତମେ ଯିବ । କ'ଣ କହୁଚ ?"

ସୀତା—ଚିଠିଟା କିନ୍ତୁ ଆପଣଙ୍କ ପାଖକୁ ଲେଖା ହୋଇଥିଲା ।

ଗୋବ—ହଁ । ମୁଁ କିନ୍ତୁ ଚିଠିଟା ଦେଖିବା ଆଗରୁ ଜିନିଷ ପତ୍ର
ବନ୍ଧାବନ୍ଧି ହୋଇ, ଯିବାର ବା'ରଣା ଆୟୋଜନ ଶେଷ
ହୋଇ ଯାଇଥିଲା । ଏମିତିକି ବସ୍‌ରେ ସିଟ୍ ରିଜର୍ଭ ହେବା
ପର୍ଯ୍ୟନ୍ତ !!

ସୀତା—ତା'ର କାରଣ—ସେ ଧରି ନେଇଥିଲେ, ଆପଣ ତା'
କଥାକୁ ଅତି ସହଜ ସାଧାରଣ କଥାପରି ମାନି ନେବେ ।

ଗୋବ—ନିଶ୍ଚୟ । ମୁଁ ମାନିନେଲି ।

ସୀତା—କଣ ମାନିନେଲେ ? ଆପଣ ତାକୁ କି ଉତ୍ତର ଦେଲେ ?

ଗୋବ—ସେଇ ଅତି ସହଜ ସାଧାରଣ ଉତ୍ତର । କହିଲି—ତମ
ସାଇକଲଟି ଦେଇଦିଅନ୍ତୁ—ତମେ ଯିବ । ଯିବାପାଇଁ ଗୋଟାଏ
ଗୋଡ଼ ପଦାକୁ କାଢ଼ି ସାରିଲା ପରେ ଆଉ ପଚାରୁଚ କ'ଣ ? ମୁଁ ଆଉ
କଣ କହିବି ? ମୋର କିଛି କହିବାର ନାହିଁ କି ମୁଁ ଭୁବନେଶ୍ୱର
ଯାଇ ପାରିବି ନାହିଁ ।···ବାସ୍—ଏଇ ଉତ୍ତରତ ମୁଁ ଦେଇଚି ।

ସୀତା—ଜଣେ ଅନୁରକ୍ତା ସ୍ତ୍ରୀ କଣ···

ଗୋବ—(ବାଧାଦେଇ) କ'ଣ-କ'ଣ କହିଲେ ? ବିଶେଷଣଟା
ଅତି ଚମତ୍କାର ତ ।

ସୀତା—ମୁଁ କହିଲି—ଅନୁରକ୍ତା । ମୁଁ ଜାଣେ ଆପଣଙ୍କ ପ୍ରତି ତାର
ଅନୁରାଗ—

ଗୋବ—ଷୋଳଣା ଉପରେ ସତରଣା ଅଛି—ଏଇଆକି ?
ମୋର ଦୁର୍ଭାଗ୍ୟ—ମୋ ପକ୍ଷ ସମର୍ଥନ କରିବାକୁ ଏଠି କେହି
ନାହାନ୍ତି । ଛାଡ଼ନ୍ତୁ, ଏସବୁ ଦାମିକା ବିଶେଷଣ ବ୍ୟବହାର
ନକଲେବି ମୁଁ ଆପଣଙ୍କ ଉଦ୍ଦେଶ୍ୟଟା ବୁଝୁଚି ।

ସୀତା—କିନ୍ତୁ ମୋର ଯାହା କହିବାର କଥା ମୁଁ କହିବ । ଜଣେ ଅନୁରକ୍ତା ସ୍ତ୍ରୀ କଣ ତା' ସ୍ୱାମୀଙ୍କଠୁଁ ଏଇ ଉତ୍ତର ଆଶା କରେ ?

ଗୋବି—ଆଉ ଜଣେ ସ୍ୱାମୀ କଣ ଅଫିସରୁ ଫେରି ତାର "ଅନୁରକ୍ତା" ସ୍ତ୍ରୀଙ୍କଠୁଁ ତାଙ୍କ ଭାଇଙ୍କର ଖଣ୍ଡିଏ ମଧୁର ଚିଠି ସହିତ ସାତଦିନର ଏକ ଲମ୍ବା ତାଲିକା ଆଶାକରେ ? କୁଆଡ଼େ ଗଲା ସେ ତାଲିକା ? (ପକେଟରୁ ବାହାର କରି) ଏଇ ନିଅନ୍ତୁ—ପଢ଼ନ୍ତୁ । କାଲିଠୁ ତାରିଖ—ଓ୍ୱାରି କାମ ବିବିଦ କରି ହେଉଛି । ପଢ଼ନ୍ତୁ । (ସୀତା ତାଲିକାଟା ନେଇ ପଢ଼ିଲେ)

ସୀତା—ଏକୋଇଶି ତାରିଖ—ମୁନିସିପାଲଟି ଟିକସ୍ ଦାଖଲ । ବାଇଶି ତାରିଖ—ଇନସୁରେନ୍‌ସ ପ୍ରିମିୟମ ଦାଖଲ । ତେଇଶି ତାରିଖ ଦର୍ଜି ଦୋକାନରୁ ପିଲାଙ୍କ ସରସ୍ୱତୀ ପୂଜା ଜାମା ପଟା ଆସିବ । ଚବିଶ ତାରିଖ—ଛୁଟି । ସୁବିଧା ହେବତ ଭୁବନେଶ୍ୱର ଯିବ । ପଚିଶ ତାରିଖ—ବ୍ରହ୍ମପୁର ପିଉସୀଙ୍କ ଘରକୁ ଶୁଖି ଦେବାର ପଠାଯିବ—କୋଡ଼ିଏ ଟଙ୍କା । ଛବିଶ ତାରିଖ—ଜଳୁଆ ଗାଁରୁ ଭଗୁଆଳ ସୁଦାମ ନାଏକ ଭାଗଧାନ ବାବଦ ବୃଜଲ ବାରବସ୍ତା ୯ ଟଙ୍କା ନେଇ ଆସିବ । (ସୀତା ପଢ଼ୁ ପଢ଼ୁ ହସି ପକାଇଲେ)

ଗୋବି—ଆପଣ ହସୁଚନ୍ତି ?

ସୀତା—କିନ୍ତୁ ସତ କହିଲେ—ଏପରି ଜଣେ ହାତେ ମାପି ଚାଲୁଥିବା ଗୃହିଣୀ ଯୋଗୁଁ ଆପଣଙ୍କର କଣ ଗର୍ବ କରିବା କଥା ନୁହେଁ ?

ଗୋବ—କିନ୍ତୁ ଏ ତାଲିକାଟା କ'ଣ ମୋର ଗଡ଼କୁ ଖର୍ବ କରୁ ନାହିଁ ? ଏଇଟା ତାଲିକା ନା, ଆଦେଶ ନାମା ?

ସୀତା—ସେଇଥିପାଇଁ ତାହାଲେ ଆପଣ କାଲି ଅଫିସ୍‌ରୁ ଫେରିବା ବେଳଠୁଁ ଅଜି ଅଫିସ୍ ଯିବାଯାଏ ତା ସହିତ କଥା କହି ନାହାନ୍ତି ?

ଗୋବ—କଥା ନ କହି ମୋର ଲଭ ବା ହେଲା କ'ଣ ? ଅଜି ଅଫିସ୍‌ରୁ ଫେରିବା ବେଳେ ମୁଁ ମନେ ମନେ ଭାବୁଥାଏ— ଏ ଅବସ୍ଥାରେ କୁନ୍ତଳାତ କେବେହେଲେ ଭୁବନେଶ୍ୱର ଯାଇ ନ ଥିବ ! ଅତଏବ ଅଜି ସନ୍ଧ୍ୟାରେ ହିଁ ଆମର ଗତ ଚବିଶ୍ ଘଣ୍ଟା'ର କଳି ନିଷ୍ପତ୍ତି ହେଇଯିବ ! କିନ୍ତୁ ଅବସ୍ଥା କଣ ଘଟିଚି ଆପଣତ ନିଜ ଆଖିରେ ଦେଖୁଚନ୍ତି ।

ସୀତା—ଅବସ୍ଥା ଯାହା ଘଟିଚି—ସେଥିରେ ମୁଁ ତାକୁ ଦୋଷୀ ବୋଲି କେମିତି କହିବି ?

ଗୋବ—ସେମିତି ମୁଁ ମଧ୍ୟ ମତେ ଅବୌ ଦୋଷୀ ବୋଲି ମାନି ନେଇ ପାରୁନି ।

ସୀତା—ବେଶ୍ । ଏହାର ଶେଷ ଫଳ କ'ଣ ହବ ତାହାହିଁ ଦେଖିବାର କଥା । ସେଇଥିରୁ ସବୁ ବୁଝାଯିବ । ମୁଁ ତାହ'ଲେ ଆସେ ।

ଗୋବ—ଯିବେ ? କିନ୍ତୁ ପାନ ଖାଇ ନାହାନ୍ତି ଯେ ! ଅରେ ସଧୁ, ସୀତା ଦେବୀଙ୍କ ପାଇଁ ପାନ ଅଣ୍ ।

ସୀତା—ଆପଣଙ୍କ ନିଜପାଇଁ ପାନଭଙ୍ଗା ହେଲଣି କି ନାହିଁ ସେ ଖବର ରଖିଛନ୍ତି ?

ଗୋବ—କୁନ୍ତଳା ନାହିଁ ବୋଲି ଏ ଘର ଅଚଳ—ଆପଣ କଥା କଥାକେ ଏଇଆହିଁ ପ୍ରମାଣ କରିବାକୁ ଗୃହୁଁଚନ୍ତି ?

ସୀତା—ମୋ ପ୍ରମାଣରେ ଯଦି କୋଉଠି କିଛି ଭୁଲ୍ ରହି ଯାଉଥାଏ, ଆପଣ ସଂଶୋଧନ କରନ୍ତୁ—ମୁଁ ଖୁସି ହେବି । କିନ୍ତୁ ଆପଣଙ୍କୁ ମୁଁ ଗ୍ର ଦେଇ ପାନ ଦେଇନାହିଁ—ମୋରହିଁ ଭୁଲ ହୋଇଛି । ମୁଁ ଯାଉଛି—ଆଉ ଘରୁ ପାନ ଭାଙ୍ଗି ଆପଣଙ୍କ ପାଇଁ ପଠେଇ ଦେବି ।

ଗୋବ—କିନ୍ତୁ ଆପଣ ମୋ ଘରେ ଅଛନ୍ତି । ଆପଣଙ୍କ ପାନ ମୁଁ ଭାଙ୍ଗି ଦେବି ।

ସୀତା—(ହସି) ଭଲକଥା—ଆସନ୍ତୁ । ମୁଁ ଦେଖେଁ—ଆପ୍ରାଣ ଚେଷ୍ଟାକରି ଏ ଘରେ କୁନ୍ତଳାର ଅଭାବ ଆପଣ କେତେ ଦୂର ପୂରଣ କରୁଛନ୍ତି !! (ସୀତା ଦେବୀ ଉଠିଲେ)

---

## ଦ୍ୱିତୀୟ ଦୃଶ୍ୟ

[ଘେଷେଇ ଘର । ଘେଷେଇ ସାଜସରଞ୍ଜାମ ସହ ସାଧୁ ବସିଛି ।
ସେ ଖୁବ୍ ବ୍ୟସ୍ତ ହୋଇ ପଡ଼ିଚ । ଅଦୂରରେ ବସିଚ ଘଧୁ ]

ସାଧୁ—ହଇରେ ଘଧୁ । ଆରେ କୁଆଡ଼େ ଗଲୁବା ?

ଘଧୁ—କ'ଣ କହୁଚ ? ମୁଁ ଏଇଠି ବଇଚ । ମତେ କିଛି ଭଲ ଲାଗୁନି ।

ସାଧୁ—ଆରେ ଟିକେ ଏଣେ ଶୁଣ ।

ଘଧୁ—(ଉଠିଯାଇ) କ'ଣ ?

ସାଧୁ—ଇଏଇ ଆଉ ଗୋଟିଏ ଅଡୁଆ ହେଲାଣି ।

ଘଧୁ—କି ଅଡୁଆ ?

ସାଧୁ—ସୀତା ଦେଈଙ୍କ ଆଗରେତ ବାବୁ ମାଲପୁଆ କଥା କହିଲେ—

ଘଧୁ—ତେମେ କଣ ଘଇନା ସତରେ ମାଲପୁଆ କରିବାକୁ ଯାଉଚ ?

ସାଧୁ—ଦେଖୁନୁ ସବୁ ଜିନଷ ଯୋଗାଡ଼ କଲିଣି—ତୁ ପୁଣି ସଉକି ମିଛ ପଚାରୁଚୁ ?

ଘଧୁ—ତମକୁ ମାଲପୁଆ କର ଆସେ ତ ?

ସାଧୁ—(ଚିଡ଼ିଯାଇ) ତୁ ଏମିତି କଥା ମତେ ଆଉ ଦିନେ କହିବୁ ନାହିଁ ଘଧୁଆ ! ତୋ ଦେଖାନ୍ତରେ ଏଇ ବାବୁଙ୍କ ଘରେ କେଇଥର ମାଲପୁଆ ହେଲାଣି ?

ଘଧୁ—ସବୁଥର ମା' କରନ୍ତି—ତେମେ ଖାଲି ସାକ୍ଷୀ-ଗୋପାଳ ହୋଇ ବସ ।

ସାଧୁ—ତୁ ସେ କୁହାଳିଆ ଚଙ୍ଗ ଗୁଡ଼ । ମୋ' କାମ ମୁଁ ତୁଲେଇବ ।
ଏ କଥାଟା ଜଣ ହବ କହ ।

ରାଧୁ—କୋଉ କଥା ?

ସାଧୁ—ମାଲପୁଆ କଥା ସୀତା ଦେଇତ ଶୁଣିଚନ୍ତି—ତାଙ୍କ ଘରକୁ ମାଲପୁଆ ଯିବ କି ନାହିଁ ?

ରାଧୁ—ଅଚ୍ଛା ଭଇନା ! ଏ ପରଘରେ ମଙ୍ଗଳବାର ବୁଦ୍ଧି ତମକୁ ଦେଲା କିଏ ? ଦେଖୁଚ ମା ଘରେ ନାହାନ୍ତି—ତମେ ଏତିକବେଳେ ବନ୍ଧୁଚର୍ଚ୍ଚା କରିବାକୁ ବାହାରିଲଣି !

ସାଧୁ—ବାବୁଙ୍କୁ ଯାଇ ପଚାରିବା ?

ରାଧୁ—ଏତିକରେ ମନ ମାନନାହିଁ ଯେ ଆଉରି ଦି'ପଦ ଶୁଣିବାକୁ ମନ ହଉଚି ? ପଚାରିବ କଥା ତେମେ ଯାଇ ପଚାର—ମୁଁ ଏଥିରେ ନାହିଁ ।

ସାଧୁ—ନ ରହିଲେ ନାହିଁ, ଯା !! ଭରି ଗୋଟାଏ ଧମକ ଦେଇ ଶିଖିଚି । ମୋ ବୁଦ୍ଧିକି ଯାହା ଆସିବ—ମୁଁ କରିବ ।

ରାଧୁ—ହଉ, କରୁଥା—ମଜା ପାଉଥା । ମୋର କଣ ଅଛି ? ମୁଁ ମୋର ଏଠି ଭୁଜା ହେଇ ବସିଲି ।

ଗୋବ—(ଦୂରରୁ) ସାଧୁ—ସାଧୁ—

ସାଧୁ—ଆଜ୍ଞା । (ଗୋବର୍ଦ୍ଧନ ଆସିଲେ)

ଗୋବ—ରୋଷେଇ ସରିଲା ?

ସାଧୁ—ନାହିଁ ଆଜ୍ଞା—ସରିନାହିଁ ।

ଗୋବ—ସରି ନାହିଁ ? କ'ଣ ଏତେବେଳ ଯାଏ କରୁଚ ? କଓ ଏ କଣ ? ଏ ସବୁ କ'ଣ ଏଠି ଥୁଆ ହେଇଚି ଚିନି, ମଇଦା ଘିଅ, ନଡ଼ିଆ, ଚାଟଳି କଦଳୀ, ଦୁଧ—ଏ ସବୁ କଣ ହବ ?

ସାଧୁ—ଆଜ୍ଞା···ମାଲପୁଆ !!

ଗୋବ—ମାଲପୁଆ ! ତମକୁ ମାଲପୁଆ କରିବାକୁ କିଏ କହିଲା ?

ସାଧୁ—ଆପଣ ବସିଥିବେବେଳେ...

ଗୋବ—ଶୁଣୁଚ ସ୍ତ୍ରୀ କଥା !

ସାଧୁ—ମୁଁ କହୁଚି ଭଉଣୀ—ବାବୁ କଥା ନହସରେ ମାଲପୁଆ କଥା କହିଦେଲେ—ତେବେ ପରଖା ଦ'ଖଣ୍ଡ କରିଦିଅ—

ସାଧୁ—ମୁଁ କହିଲି କି ବାବୁଙ୍କ ମୁହଁରୁ ଯେତେବେଳେ କଥାଟା ବାହାରିଲଣି—ମୁଁ ମାଲପୁଆ ଦ'ଟା କରିଦିଏଁ । ( ସୀତା ଦେବୀ ଆସିଲେ । ହାତରେ ଟିଫିନ୍ କେରିଅର୍ )

ସୀତା—ସାଧୁ ତା ହେଲେ ଆପଣଙ୍କୁ ମାଲପୁଆ କରି ଖୁଆଇଲା !! ଏଇଠି ଏକା କୁନ୍ତଳାର ପରାଜୟ ।

ଗୋବ—ଆପଣ ପୁଣି ଆସିଲେଣି ସୀତାଦେବୀ ? ଦେଖନ୍ତୁ ଏ ଅପଦାର୍ଥର କାଣ୍ଡ ।

ସୀତା—କଉ ସାଧୁ । ଇଏ କଣ ? ଏତେ ରାତି ହେଲଣି—ଜଳଖିଆ କୁଆଡ଼ୁ ହେଇନି ?

ଗୋବ—ହଇରେ ସାଧୁ, କଥା କ'ଣ ?

ସାଧୁ—ଆଜ୍ଞା ମାଲପୁଆ କରିବେ ବୋଲି ସବୁ ଠିକଣା କଲେ—ହେଲେ କେମିତି କ'ଣ କରିବେ, କିଛି ମନେ ପଡ଼ୁ ନାହିଁ !! କହୁଚନ୍ତି—ହରି ସାହୁ ଗୁଡ଼ଆକୁ ପଚାରିବାକୁ ଯିବେ ।

ସୀତା—ସତରେ ତା ହେଲେ ମାଲପୁଆ ତିଆରି ହବ ! ରାତି କନ୍ତ ଦଶ ବାଜିଲଣି !

ଗୋବ—ଆପଣ ପାଗଳ ହେଲେ—

ସୀତା—ତା ହେଲେ, ଆସନ୍ତୁ—ବସନ୍ତୁ । ସାଧୁ, ବାବୁଙ୍କ ପାଇଁ ଜାଗାକର । ବାବୁଙ୍କୁ ମୁଁ ପଛରେ ଉଠେଇ ଖୁଆଇବି ।

ଗୋବ—କନ୍ତୁ ମୁଁ ଖାଇବ କଣ ? ଏ କଣ ? ଆପଣ କଣ ମଇଦା ଦଳିଲେଣି ?

ସୀତା—ତନ ମିନିଟରେ କେମିତ ଲୁଚ ହୁଏ—ଅଜ ପରୀକ୍ଷା କରାଯିବ । ରାଧୁ, ବେଲଣା ପେଡ଼ିଟା ଦେ । ପୁଷ୍ପା, ଟେମେ ଚୁଲିରେ ଦିଅ କରେଇଟା ବସାଅ ।

ଗୋବ—ଏ ଟିଫିନ୍ କ୍ୟାରିଆର୍‌ରେ ଆପଣ କ ଣ ଆଣିଚନ୍ତି ?

ସୀତା—ମୁଁ ସେତେବେଳେ ଆପଣଙ୍କ ଘରୁ ଗଳାପରେ ଦେଖିଲି ଗାଁରୁ କଣ୍ଟ ମାଛ ଆସି ପହଞ୍ଚିଚ । ଆମ କେନ୍ଦ୍ରାପଡ଼ା ଚୁଙ୍ଗୁଡ଼ି । ଆପଣଙ୍କ ପାଇଁ ତରକାରୀ ଟିକଏ ନେଇ ଆସିଚ । ଅରେ, ଆପଣ ଏମିତ ମୁହଁ ଶୁଖେଇ ଦଉଚନ୍ତି କାହିଁକି ? ଘାବୁଚନ୍ତି ଆପଣ ହାରି ଯାଉଚନ୍ତି ? କାହିଁକି ? କୁନ୍ତଳା ଥିଲେ କ'ଣ ମୁଁ ତରକାରୀ ଦେଇ ନ ଥାନ୍ତି ?...ଆସନ୍ତୁ—ବସନ୍ତୁ ।

( ଗୋବର୍ଦ୍ଧନ ଆସନରେ ବସିଲେ )

---

# ତୃତୀୟ ଦୃଶ୍ୟ

[ମଧ୍ୟରାତ୍ରି । ଖଟ ଉପରେ ଗୋବର୍ଦ୍ଧନ ଓ ବଜ୍ରୁ ଶୋଇଛନ୍ତି]

ବଜ୍ରୁ—( ନିଦରୁ ଉଠି ) ଅଗା—ଅଗା—ଅଗା—( ଗୋବର୍ଦ୍ଧନ ଉଠିଲେ )

ଗୋବ—ବଜ୍ରୁ ! କ'ଣ ହେଲା ବଜ୍ରୁ ? ନିଦ ଭାଙ୍ଗିଗଲା ?

ବଜ୍ରୁ—ଅଗା ମତେ ଡାକୁ ଥିଲା ।

ଗୋବ—ଅଗା ! ଅଗା କାହିଁ ? ଅଗା ପରା ଭୁବନେଶ୍ୱର ଯାଇଛି ! ତୁ ସପନ ଦେଖିଲୁକି ?

ବଜ୍ରୁ—ସପନ ! ହଁ ବାପା—ମୁଁ ସପନରେ ଦେଖିଲି ଅଗା କାହିଁ କେତେ ଉଚ୍ଚରେ ଠିଆ ହୋଇ ମତେ ଡାକୁଛି···ଚାଲ ବାପା ଆମେ ଭୁବନେଶ୍ୱର ଯିବା ।

ଗୋବ—କହୁଛି ପରା—କାଲି ସକାଳେ ଯିବା ।

ବଜ୍ରୁ—ନିଶ୍ଚେ ଯିବାଟି ?

ଗୋବ—ସକାଳ ହେଉ ଦେଖିବୁ । ଏଇନେ ଶୋଇ ପଡ଼ । ( ବଜ୍ରୁ ପୁଣି ଶୋଇଲା )

ଗୋବ—ଶୋଇଲୁ ?

ବଜ୍ରୁ—ହୁଁ ।

ବଜ୍ରୁ—(ଧୀରଗଳାରେ ଡ଼ରିଯାଇ) ବାପା !

ଗୋବ—କଣ ବଜ୍ରୁ ?

ବଜ୍ରୁ—ମତେ ଡର ମାଡ଼ୁଛି ବାପା !

ଗୋବ—ଡର କ'ଣ ? ମୁଁ ପରା ତୋ' ପାଖରେ ଶୋଇଛି ।

ବଳୁ—ତମେତ ଏ ପାଖରେ ଶୋଇଚ—ଏ ପାଖରେ ହୋଇ କେଇ ନାହାନ୍ତି—ଏ ପାଖରୁ ଡର ମାଡ଼ୁଛି ।

ଗୋବ—ଅଚ୍ଛା—ଅଚ୍ଛା—ଏ ପାଖରେ ହୋଇ ମୋ' ହାତ ରଖିଲ ହେଲ ?

ବଳୁ—ହଁ, ଅଉ ଡ଼ର ମାଡ଼ୁନି । ହାତ ସେମିତ ରଖିଥିବ—ଉଠେଇବ ନାହିଁ ।

ଗୋବ—ନା, ଉଠେଇବ ନାହିଁ । ତୁ ଶୋଇ ପଡ଼ ।

ବଳୁ—ମତେ ଘୋଡ଼େଇ ଦିଅ ବାପା—ଶୀତ କରୁଚ ।

ଗୋବ—ରେଜେଇ ଘୋଡ଼ି ହୋଇଚୁ ପରା—

ବଳୁ—ନାହିଁ ରେଜାଇ ନୁହେଁ—ତମ ଲୁଗା କାନି ।

ଗୋବ—ଲୁଗା କାନି !!

ବଳୁ—ହଁ ! ବୋଉ ମତେ ତା' ଲୁଗା କାନି ଘୋଡ଼େଇ ଶୁଆଇ ପକାଏ—ଶୀତ କରେନାହିଁ କି ଡର ମାଡ଼େ ନାହିଁ । ମତେ କାନି ଘୋଡ଼େଇ ଦିଅ ବାପା ।

ଗୋବ—ଅରେ ବୋଉ ସିନା ଶାଢ଼ୀ ପିନ୍ଧେ ଯେ କାନି ଘୋଡ଼େଇ ଦିଏ । ମୁଁ ପରା ଏଇ ଢିଲ ପାଇଜାମା ପିନ୍ଧିଚ ।

ବଳୁ—ନାହିଁ ବାପା ମତେ କାନି ଘୋଡ଼େଇ ଦିଅ—ଖାଲି ରେଜେଇ ମତେ ଭଲ ଲାଗୁନି ।

ଗୋବ—ଅଚ୍ଛା ମୁସ୍କିଲରେ ପକେଇଲ । ରହ ତା' ହେଲେ—ମୁଁ ଲୁଗାଟା ପିନ୍ଧେ ।...(ଗୋବର୍ଦ୍ଧନ ପାଖ କୋଠରିରୁ ଲୁଗା ପିନ୍ଧି ଆସିଲେ)

ବଳୁ—ପିନ୍ଧିଲ ବାପା ?

ଗୋବ—ହଁ, ପିନ୍ଧିଲ ।···ଏଇ, ନେ । କାନ ଘୋଡ଼େଇ ଦେଲ, ହେଲା ?

ବଜ୍ରୁ—ହଁ—ଏଥର ଯେ ଠିକ୍ ହେଲା ।

ଗୋବ—ହଉ, ଆଉ ପାଟି ନ କରି ଶୋଇ ପଡ଼ ! (ଘଣ୍ଟାରେ ଦୁଇଟା ବାଜିଲା)

ବଜ୍ରୁ—ବାପା—ରାତି ଦୁଇଟା ବାଜିଲା ?

ଗୋବ—ହଁ ।

ବଜ୍ରୁ—ତା' ହେଲେ ଦିଅ । (ବଜ୍ରୁ ଉଠି ବସିଲା)

ଗୋବ—କ'ଣ ?

ବଜ୍ରୁ—ଆରିଶା ପିଠା ।

ଗୋବ—କ'ଣ ? ଆରିଶା ପିଠା ?

ବଜ୍ରୁ—ହଁ । ରୋଜ୍ ରାତି ଦୁ'ଟା ବେଳେ ମୋ' ନିଦ ଭାଙ୍ଗି ଯାଏ—ବୋଉ ମତେ ଆରିଶା ପିଠା ଦିଏ ।

ଗୋବା—ଦୁଷ୍ଟାମି କରନା ବଜ୍ରୁ । ଏତେବେଳେ ଆରିଶା ପିଠା କୋଉଠୁ ଆସିବ ।

ବଜ୍ରୁ—ଏଇ ପରି ଟେ ଆଲମିରାରେ ଅଛି—ବୋଉ ରଖିଚି ।

ଗୋବ—କାଲି ସକାଳେ ଖାଇଲେ ହବ ନାହିଁ ?

ବଜ୍ରୁ—ନାହିଁ ବାପା—ମୁଁ ରୋଜ ଏତିକବେଳେ ଖାଏ-ବୋଉ ଦିଏ ।

ଗୋବ—କି ଏକ୍ ଜିଦିଆ ପିଲା ! (ଚାବି ଖୋଜିଲେ) ଆରେ, ଆଲମିରା ଚାବି କାହିଁ ? ଚାବିତ ତୋ ବୋଉ ନେଇ ଯାଇଚି ।

ବଜ୍ରୁ—ଡରମ ଯେମିତି ହେଲେ ଖୋଲ ବାପା ! ମୁଁ ଆରିଶା ପିଠା ଖାଇବି ।

ଗୋବ—ଏତେଡ଼ ବଦ୍‌ମାସ୍‌ ପିଲ—ସ୍ୱତ ଅଧରେ ମଣିଷକୁ ହଇରାଣ କର ମାରୁଚ । କୋଲଠ କେମିତ ଫିଟିବ ? ଗୋଟାଏ କଣ୍ଟା ହେଲେ କଣ ମିଳୁଚ ? ଇଚ୍ଛର ଯନ୍ତ-ବାକ୍‌ସଟା କାହିଁ ?

ଷଜୁ—ଏଇ ସେ ଥାକ ଉପରେ । (ଥାକ ଉପରୁ ଯନ୍ତ୍ରବାକ୍‌ସ ଆଣିଲେ)

ଗୋବ—ଏ କମ୍ପାସ୍‌ଟାରେ ଖୋଲୁଚ କ ନାହିଁ ଦେଖେଁ ।

ଷଜୁ—ଖୋଲିବ ବାପା—ସ୍ୱୟୁ ଦିନେ ଖୋଲିଥିଲ ।

ଗୋବ—ତୁ ବସ୍‌ ଚୁପହୋଇ । (ଖୋଲ୍‌ ଖୋଲ୍‌ ହାତ ଫୋଡ଼ି ହୋଇ ଗଲ । ) ଉ-ହୋ-ହୋ !

ଷଜୁ—କ'ଣ ହେଲ ବାପା ?

ଗୋବ—ଉଃ ! କମ୍ପାସଟା ହାତ ପାପୁଲିରେ ଫୁଟିଗଲ । ଏ ଟୋକା ହେଉଁଠି ଥିବ—

ଷଜୁ—ମୁଁ କ ଣ କରିବ ? ମୁଁ ତ ଆରଶା ପିଠା ମାଗୁଚ । ଔଷଧ ଲଗେଇ ଦେବ ବାପା ?

ଗୋବ—ତୁ ଶୁଅ ଚୁପ ହୋଇ । (ଡାକଲେ) ସଧୁ—ସଧୁ—

---

## ଶେଷ ଦୃଶ୍ୟ

[ ପରଦିନ ସକାଳ । ଗୋବର୍ଦ୍ଧନ ବସିଚନ୍ତି । ସୀତା ଦେଇ ଆସିଲେ ]

ସୀତା—ଚ୍ହ ଖାଇଲେଣି ?

ଗୋବ—ହ ।

ସୀତା—ଆଜ ବୋଧହୁଏ ..ଖୁବ୍ ବେଶୀରେ ପନ୍ଦର ମିନଟ୍ ।

ଗୋବ—କ'ଣ ?

ସୀତା—କୁନ୍ତଳା ଆସି ପହଞ୍ଚିବ ।

ଗୋବ—ମାନେ ?

ସୀତା—ମୁଁ କେମିତି ତାକୁ ଫୋନ୍‌ରେ କହିବ—

ଗୋବ—କ'ଣ କହିଲେ ?

ସୀତା—ଏଇ କାଲି ରାତିରେ ଆପଣଙ୍କର କମ୍ପାସ୍‌ରେ ହାତ ଫୋଡ଼ି ହୋଇ ଯିବା କଥା !! ସେ ସଙ୍ଗେ ସଙ୍ଗେ ଗୋଟାଏ ଜବ୍ଧର ରାହାରିଚ ।

ଗୋବ—ଆପଣ ଫୋନ୍‌ରେ ଏକଥା ତାକୁ କହିଥିଲେ କାହିଁକି ? ମୋ ହାତ ତ କଟି ହୋଇ ନ ଥିଲା—ଏଇ ସାମାନ୍ୟ ! ଆଜ ତାର ଚନ୍ଦ୍ରବର୍ଣ୍ଣବ ନାହିଁ ।

ସୀତା—ଏକଥା ଅବଶ୍ୟ ମୁଁ ତାକୁ କହିଥିଲି । ତଥାପି ସେ ଆସିଲା । କାହିଁକି ଜାଣନ୍ତି ?

ଗୋବ—କାହିଁକି ?

ସୀତା—ଭାଇ ସେ ନଥିଲା ବୋଲି ଆପଣ ଯେମିତି ପଦେ ପଦେ ହାଇରାଣ ହେଉଚନ୍ତି—ସେଠି ସେ ବି ଏବେ ଆପଣଙ୍କ ଅନୁପସ୍ଥିତରେ ସେଇ ଦଶା ଭୋଗିଥିବ ! ଆଜି ସେଇଥି ପାଇଁ ମୋ'ଠୁଁ ଏ ଖବରଟା ପାଇଲା ପରେ ନିଜ ବାପ ଭାଇଙ୍କ ପାଖରେ ଦଣ୍ଡେ ଘଣ୍ଟାଏ ନ ରହି ସିଏ ପଳେଇ ଆସିଲା। ଏଇଥିରୁ ଆପଣ ବିଚାର କରନ୍ତୁ—ଏ ଘଟଣାରେ ସିଏ ହାରିଲେ କି ଆପଣ ହାରିଲେ ?...ମୁଁ ଯାଉଚି—କୁନ୍ତଳା ଆସିଲେ, ପୁଣି ଆସିବି ।

(ସୀତା ଦେଈ ଚାଲିଗଲେ । ଗୋବର୍ଦ୍ଧନ ସେଇ ପରି ବସି ରହିଥାନ୍ତି)

---

## ଏ ଚିତ୍ରରେ ଅଛନ୍ତି

ଗୋବର୍ଦ୍ଧନ ବାବୁ—ଗୃହସ୍ୱାମୀ

କୁନ୍ତଳା—ତାଙ୍କ ସ୍ତ୍ରୀ

ଇନ୍ଦୁ—ତାଙ୍କ ଝିଅ

ବିଜୁ—ତାଙ୍କ ପୁଅ

ସାଧୁ—ତାଙ୍କ ପୁତୁରା

ରାଧୁ—ତାଙ୍କ ଭୃତ୍ୟ

ଓ

କୁମ୍ଭକର୍ଣ୍ଣ—ବିଳାସ—ବଟିକା ମାନୁଫାକ୍‌ଚରିଙ୍ଗ୍ କମ୍ପାନୀର ଜଣେ ଏଜେଣ୍ଟ ।

# ଷଷ୍ଠ ଚିତ୍ର

## ପ୍ରଥମ ଦୃଶ୍ୟ

[ଗୋବର୍ଦ୍ଧନ ବାବୁଙ୍କ ବାସଭବନର ଏକ ପ୍ରକୋଷ୍ଠ ।
ଭିତରୁ କବାଟ ବନ୍ଦ ଅଛି । ଗୋବର୍ଦ୍ଧନଙ୍କ ପାଟି
ବାହାରୁ ଶୁଭିଲା । ସମୟ—ପ୍ରଭାତ ।
ଗୋବର୍ଦ୍ଧନ ପ୍ରାତଃ-ଭ୍ରମଣରୁ
ଫେରିଚନ୍ତି ]

ଗୋବ—(ବାହାରୁ) ସାଧୁ, ସାଧୁ ! କବାଟ ଖୋଲ । ସାଧୁ ! ଏ ସକାଳଟାରୁ କବାଟ ବନ୍ଦ ହୋଇଚି କାହିଁକି ? ପୁଷ୍ପାଶ୍ରୀ ! ପୁଷ୍ପାଶ୍ରୀ !! ଏଁ—କେହି କଣ ଶୁଣୁ ନାହାନ୍ତି ! ବିଜୁ— ବିଜୁ—

ବିଜୁ—(ଭିତରୁ) ଯାଉଚି ବାପା ।

(ବିଜୁ ଘର ଭିତରକୁ ଆସି କବାଟ ଖୋଲିଲା ।
ଗୋବର୍ଦ୍ଧନ ଆସିଲେ । ତାଙ୍କ ହାତରେ
ଗୋଟିଏ ଓଜନିଆ କାଗଜ ଠୁଙ୍ଗା ।
ଠୁଙ୍ଗାଟିକୁ ଗୋଟିଏ ସ୍ଥାନରେ
ରଖିଲେ ।)

ଗୋବ—କରେ କବାଟ କାହିଁକି ବନ୍ଦ ହୋଇଥିଲା ?

ବିଜୁ—କବାଟ......

ଗୋବ—ଏ ସକାଳଟାରୁ କବାଟ ବନ୍ଦ ହୋଇଥିଲା କାହିଁକି ? କିଏ ଦେଇଥିଲା ? (ଇନ୍ଦୁ ଆସିଲା)

ବଳୁ—ଏ ଅଘା, ତୁ କବାଟ ଦେଇଥିଲୁ ?

ଇତି—ନାଇଁ ।

ବଳୁ—ଆଉ କିଏ ଦେଇଛି ?

ଇତି—ସାଧୁ ନନା ଦେଇଛି ନା' କଣ !!

ଗୋବ—ତମେ ଦୁହେଁ କ'ଣ କରୁଥିଲ ?

ବଳୁ—ଆମେ ମସ୍ତ ଘର କରିଚୁ ବାପା ।

ଗୋବ—ଘର କରିଚ ? ଏ ସକାଳଛଟାରେ ଘର କ'ଣ କରିଚ ? ତୋ ବୋଉ କାଇଁ ?

ବଳୁ—ଡାକନାଇଁ ବାପା, ଡାକ ନାଇଁ—ପାଟି କରନା ।

ଗୋବ—ପାଟି କରିବି ନାଇଁ ! ପାଟି କରିବାକୁ କିଏ ମନା କରିଚ ?

ବଳୁ—ବୋଉ ମନା କରିଚ ।

ଗୋବ—କାଇଁକି ? ଆଜି କ'ଣ ଏ ଘରେ ମୌନ-ଦିବସ ପାଳନ କରାଯାଉଚି ଯେ ପାଟି କରିବନି ? ତୋ ବୋଉ କାଇଁ— କୋଉ ଘରେ ?

ଇତି—ହେଇଚ, ଶୁଣବାପା । ବୋଉ ହାଲିଆ ହୋଇ ନିଦ୍ରାଳାରେ ଠାକୁର ଘରେ ନିଶାଇ ପଡ଼ିଚି । ତାକୁ ଉଠାନା ।

ଗୋବ—ସକାଳ ଅଠଟା ବେଳେ କିଏ ଶୁଏ ନା ସେ ଶୋଇବ ? ଯା, ଡାକ ତୋ ବୋଉକୁ ।

ବଳୁ—ନାଇଁ ବାପା, ତମେଶୁଣ—ବୋଉ କାଲି ଜାଗରଉପାସ କରି ହାଲିଆ ହୋଇ ପଡ଼ିଚି ବୋଲି ଶୋଇଛି । ବୋଉ ଯେମିତି ଶୋଇଛି, ସାଧୁ ଦି'ଟା ପଖାଳ ଖାଇ ତା'ର ସେ ଶୋଇଛି ।

ଇତି—ସାଧୁ ଯେମିତି ଶୋଇଲ…

ଗୋବ—ସାଧୁବାବୁ ମୁନ୍ଦାଏ ପିଇ ଶୋଇଲ—ଏଇଆ ନା ?

ବଜୁ—ନାଇଁ ବାପା, ଶୁଣ । ତମେତ ସକାଳୁ ବୁଲିବାକୁ ଗଲ । ସାଧୁନନା ଆମ ଦୁହିଁଙ୍କୁ ଡାକି କହିଲେ—ମୋ ବାପାଟା ପରା—ମା ଟା ପରା—ବାପାଘରେ ନାହାନ୍ତି—ବୋଉ ଶୋଇଲେଣି—ମୁଁ ଟିକିଏ ହଡ଼ ବଡ଼ ହଉଚି ।

ଇତି—ଅରେ ହଡ଼ ବଡ଼ କ'ଣ ? ସାଧୁନନା କହିଲେ—ମୁଁ ଟିକିଏ ଗଡ଼ପଡ଼ ହଉଚି—ତେମେ ଦହେଁ ଟିକିଏ ଘର ଦୁଆରକୁ ଅନସା ରଖିଥା ।

ଗୋବ—ହୁଁ । ସମସ୍ତେ ତାହାଲେ ଶୋଇଲେ—ଆଉ ତମେ ଦୁହେଁ ଘର ଜଗିଲ ?

ବଜୁ—ହଁ ।

ଗୋବ—ବେଶ୍ ପକ୍‌କା ବ୍ୟବସ୍ଥାତ ହୋଇଚି । ପିଲା ଦହ'ଟାଙ୍କୁ ଘର ଜଗଗଇ ଦେଇ ସିଏ ଯୁଆଡ଼େ ଅରାମରେ ଶୋଇଚନ୍ତି । (ବଡ଼ ପାଟିରେ) ସାଧୁ—ସାଧୁ (ଆଖି ମଳି ମଳି କୁନ୍ତଳା ଆସିଲେ । ବଜୁ ଇତି ଚାଲି ଗଲେ)

କୁନ୍ତ—ଓଃ ! କଣ ହୋଇଚି ? କାଇଁ ଏମିତି ଡାକ ହାକେଲ ପକେଇଚ ?

ଗୋବ—ଡାକ ହାକେଲ ପକେଇଲି ମାନେ ? ଘରର ମଣିଷଟା ମୁଁ—ଘରେ ମୋର କିଛି କାମ ନାଇଁ ? କାହାକୁ ଡାକିବ ନାଇଁ ?

କୁନ୍ତ—ଟେବୁଲ୍ ଉପରେ ଜଳଖିଆ ଥୁଆ ହୋଇଚି, ଖାଅ ।

ଗୋବ—ମୁଁ ତୃ ଜଳଖିଆ ଖାଇ ଆସିଚି ।

କୁନ୍ତ—ଖାଇଚ ? କୋଉଁଠୁ ଖାଇଲ ?

ଗୋବ—ବାଟରେ ଶାମ ଦେଖା ହେଲା । ଜୋର କରି ତା' ଘରକୁ ଡାକନେଇ ଖାଇବାକୁ ଦେଇଚି । ଆଉ କିଛି ମୁଁ ଖାଇବ ନାହିଁ ?

କୁନ୍ତ—ଖାଇବ ନାହିଁତ ଡ଼ାକୁଥିଲ କାହିଁକି ?

ଗୋବ—ମୁଁ ଖାଇବ ନାହିଁ ବୋଲି ତମେ ସମସ୍ତେ ଅଗ୍ରାମରେ ଶୋଇବ ?

କୁନ୍ତ—ଶୋଇଚ କିଏମ ?

ଗୋବ—ତମେ ଶୋଇ ନଥିଲ ?

କୁନ୍ତ—ନା ।

ଗୋବ—ତମ ଆଖି—ମୁହଁ—କଥା, ସବୁ କହୁ ଦଉଚି—ତମେ ଶୋଇଥିଲ । ନାହିଁ କହୁଚ କାହିଁକି ? ସାଧୁ, ସାଧୁ, କାହାନ୍ତି ?

କୁନ୍ତ—କ'ଣ ଏମିତ ନତାଣିଙ୍କ ଭଳିଆ କହୁଚମ ? ଓଷା ପାଳି ହାଲିଆ ହେଇ କିଏ କୋଉଠି ହିଁକେ ଗଡ଼ି ପଡ଼ିଚ ।

ଗୋବ—ତମେ ସିନା ଓଷା କରିଥିଲ ? ସେ ଦୁହେଁ ?

କୁନ୍ତ—ସେ ଦୁହେଁବି ଓଷା କରିଥିଲେ ।

ଗୋବ—ଓ ! ସମସ୍ତେ ତାହାହେଲେ କାଲି ରାତି ସାରା ବସି ଜାଗର ଜାଳିଚ ?

କୁନ୍ତ—କି କଥା ତମେ କହୁଚମ ? ପର ପୁଅ ତମ ଘରେ ଆସି ଗୃହକର୍ମ କଲେ ବୋଲି ତାଙ୍କ ଧର୍ମ କର୍ମରେ ତମେ ବାଧା ଦବ ?

ଗୋବ—ସିଏତ କାଲି ଓଷାକରି ଅଜା ଗଡ଼ ପଡ଼ ହେଲେଣି । ମୁଁ ପୁଣି ବାଧା ଦେଲି କେବେ ବେଳେ ?

କୁନ୍ତ—ସେ ଦୁହେଁ ପୁଣି କାଲି ସଞ୍ଜରେ ପରମହଂସ ଯାଇଥିଲେ ।

ଗୋବ—କ'ଣ ହେଲା ? ପରମହଂସ ଯାତ୍ରାର ବାଦ ପଡ଼ନା ? ଗଲେ କେମିତି ? ଗୃହ୍ଲ ଗୃହ୍ଲ ?

କୁନ୍ତ—ହଁ, ଗୃହ୍ଲ ଗୃହ୍ଲ ଗଲେ—ଏଇ ହେବନ୍ତୁ ପୁଣି ଗୃହ୍ଲ ଗୃହ୍ଲ ଆସିଲେ ।

ଗୋବ—କାହିଁ, ମୁଁ ତ ଏକଥା ଜାଣିନ ।

କୁନ୍ତ—ସିଏତ ଗଲେ କାଲିରାତି ଦଶଟା ପରେ—ତମେ ସେତେ-ବେଳକୁ ଶୋଇଲଣି ।

ଗୋବ—ବୁଦ୍ଧିମାନର କାମ । ରାତି ଦଶଟା ଆଗରୁ ଯାଇଥିଲେ ମୁଁ ହୁଏତ ଜାଣିଥାନ୍ତି—ଆଜି ଜାଣିଥିଲେ ବଚରା ପରପୁଅ ଦୁଇଟିଙ୍କର ଜାଗର ଉପବାସ ଧର୍ମ, ଆଜି ପରମହଂସ ଯାତ୍ରା କର୍ମ ଏଥିରେ ହୁଏତ ବାଧା ପଡ଼ିଥାନ୍ତା ! ଅତଏବ ମୁଁ ଶୋଇବା ପରେ ଯାଇ ମୁଁ ଉଠିବା ପୂର୍ବରୁ ଫେରିଆସି ସେମାନେ ଖୁବ୍ ବୁଦ୍ଧିମାନର କାମ କରିଚନ୍ତି । ଏ ବୁଦ୍ଧି ତାଙ୍କୁ ଦେଲା କିଏ ?

କୁନ୍ତ—ମତେ ଏମିତି ଜେରା ନକର ସଅ। କହୁ ଦନ୍ତନ ଯେ ମୁଁ ତାଙ୍କୁ ଏ ବୁଦ୍ଧି ଦେଇଚ ।

ଗୋବ—ଏ ସବୁ କାମରେ ତୁମ ଅପେକ୍ଷା ରାଧୁ ସାଧୁ ବେଶି ଚତୁର ବୋଲି ମୁଁ ଜାଣେ । ଆଜି ଚତୁର ବୋଲି ଏ ଘରେ ସେମାନେ ମୋ ମନ ନନେଇ ତମ ମନ ନେଇ କାମ କରନ୍ତି ।

କୁନ୍ତ—ଏଇଥିରୁ ତମ ଘର କରଣା ବୁଦ୍ଧି ଜଣା ପଡ଼ୁଚି । ଆଜି କାଲି ଗୃହର ପୁଅଝିଅ ବାପା ମନ ନେଇ କାମ କରନ୍ତି ନାହିଁ । ତାଙ୍କ ମନନେଇ ତମକୁ କାମ କରିବାକୁ ପଡ଼େ ।

ଗୋବ—ତା' ହେଲେ କୁନ୍ତଳା ସେମାନେ ଆଜି ସକାଳୁ ଗାଧୋଇ ପଖାଳ ଖାଇ ଶୋଇବେ ! ଆଉ ତମେ ଡିନର୍ହିଁ ଖାଲି ଉପବାସ କରି ହାଲିଆ ହେଇ ପଡ଼ିଚ ବୋଲି, ତମ ପ୍ରତି ସହାନୁଭୂତି ଦେଖାଇ ଆଜି ଆମେ ଡିନର୍ହିଁ ଉପବାସ କରିବୁ !

କୁନ୍ତ—ଆଜିତ ତମର ଅଫିସ୍ ବନ୍ଦ । ପିଲାଙ୍କର ଇସ୍କୁଲ ବନ୍ଦ । ହେଇ ହେଇ ସେ୍ପେଷଇ ଟିକିଏ ଡେରି ହେବ । ଏଥିରେ ତମକୁ ଉପାସ କରିବାକୁ କହୁଚି କିଏ ? ଏମିତି ତମକୁ ଉପାସ କରି ଆସେ ? ବର୍ଷକେ କେଇଟା ଏକାଦଶୀ ପଡେ ଯାହାଙ୍କୁ ଜଣା ନାହିଁ—ସେ ପୁଣି ଉପାସ କରିବେ !

ଗୋବ—ତାହାଲେ ବଜ୍ରୁ ଇଡି ଦୁହିଙ୍କୁ ନେଇ ମୁଁ ସେ୍ପେଷେଇ ଘରକୁ ଯାଉଚି ।

କୁନ୍ତ—ମୋ ସାଙ୍ଗରେ ସେମିତି ଲଗାନା କହୁ ଦଉଚି । ଧନଟା ଏ ଭାଇଙ୍କ ପାଖକୁ ଭୁବନେଶ୍ୱର ଚାଲି ଯାଇଥିଲି ବୋଲି ପରା ଏଣେ ସୃଷ୍ଟି ପ୍ରଳୟ ହୋଇଗଲା । ଚୁଆଟାକୁ ସମାଳି ପାରିଲ ନାହିଁ । ଘିଅ ଅଧରେ ମାଲପୁଆ କରିବା ବୋଲି, ପୂଜାରୀକୁ ବରାଦ ଦଉଥିଲ !!

ଗୋବ—ମୁଁ ବରାଦ ଦଉଥିଲି—ନା, ତମ ଗୁଣମଣି ପୂଜାରୀଙ୍କର ସେ କୀର୍ତ୍ତି ! ଏ ବଜ୍ରୁ, ଡାକ୍—ସୀତା ଦେଇଙ୍କୁ ଡାକ୍ । ତାଙ୍କର ଆଗରେ ଆଜି ଏ କଥା ପଡୁ ।

କୁନ୍ତ—କୋଉ ସୀତା ଦେଇ ବା ! ସେ କିଏ ? ତାଙ୍କୁ କାହିଁକି ଡାକିବ ?

ଗୋବ—ତମ ଭଲ ଅକ୍ତିଙ୍କ ତ ମୁଁ ଅଉ କୋଉଟି ଦେଖିନ; ଭଦ୍ରମହିଳା ସାଇ ପଡ଼ିଶାରେ ଘର କରି ଅଛନ୍ତି—ତମର

ପୁଣି ଅତି ଅପଣାର ବନ୍ଧୁ । ତମେ ମନେ ନକରିବୁ—ନପୋଷ୍ଟୁ ଝିଅକୁ ସାଥିରେ ଧରି, ଏମିତକି ଅଲମାସ୍ତି ଗୃହ ପର୍ଯ୍ୟନ୍ତ କାନରେ ବାନ୍ଧି ବାପଘରକୁ ଛୁ' କଲ । ଆଜି ସେ ବିଚରା ମନକୁ ମନ ତମ ଘରକୁ ଆସି ତମ ଘରକାମ ଉଠେଇ ଦେଲେ ବୋଲି ତାଙ୍କର ଦୋଷ ହେଇଗଲା !

କୁନ୍ତ—ହଁ, ତା'ର ଦୋଷ ହେଇଛି । କାହିଁକି ଆସି ସେ ରାନ୍ଧିବାଢ଼ି ତମକୁ ଖାଇବାକୁ ଦଉଥିଲେ ? ଦିନେ ଉପବାସ ରହିଥିଲେ ବୁଝିଥାନ୍ତ ଯେ କେମିତି ନିଜେ ଖଟି, ପର ମଣିଷଙ୍କ ମନନେଇ ଘର ଚଳେଇବାକୁ ହୁଏ ।

ଗୋବ—ତା'ହେଲେ ସେଇଆ ହଉ କୁନ୍ତଳା !···ଭାବିଥିଲି ଅଜା ଛୁଟିଟା—ମାଛ ମାଂସ କରି ଭଲରେ ମଣିଷ ଦି'ଟା ଖାଇ ଥା'ନ୍ତା ! ସେ କଥା ଏବେ ନ ହେଲା । ସାଧୁ ସାଧୁଙ୍କ ମନ ନେବା ପାଇଁ ତମେ ତାଙ୍କୁ ଛାଡ଼ିଦିଅ—ସେମାନେ ଶୁଅନ୍ତୁ । ଆଉ ତମ ମନ ନବା ପାଇଁ ମୁଁ ମଧ୍ୟ ନୀରବ ରହୁଛି— ତମେ ଯାଇ ବିଶ୍ରାମ କର ।

କୁନ୍ତ—ସେ ଠୁଙ୍ଗାରେ ସେଠି କ'ଣ ଥୁଆ ହେଇଛି ?

ଗୋବ—କାଇଁ, କୋଉଠି ?

କୁନ୍ତ—କ'ଣ ଏମିତି କିଛି ନ ଜାଣିଲା ପରି ତେଣିକି ମୁହଁ ବୁଲେଇ ଦଉଛ ? ଠୁଙ୍ଗାରେ କ'ଣ ଆଣିଛ ? ମାଛ ? (ପ୍ରକୃତରେ ଗୋବର୍ଦ୍ଧନ କିଛି ନ ଜାଣିଲଭଳି ଛଳନା କରୁଥାନ୍ତି)

ଗୋବ—ଏଁ, ମତେ କ'ଣ କହୁଛ ? ଆରେ ବିଜୁ, କାଲିକା କାଗଜଟା କ'ଣ ହେଲା କରେ !

କୁନ୍ତ—(ହସି ପକେଇ) ଯେ୍ନ’ କ ଜାଣି—ପିଅଣା ଚଙ୍ଗ ବାହାର କରୁଚ ? ପଚ୍ଛୁଚ ପର ସେ ଠୁଙ୍ଗାରେ କ’ଣ ଆଣିଚ ? ମାଛ ?

ଗୋବ—ମାଛ ! ···ନାଇଁ କୁନ୍ତଲା ମାଛ କୋଉଠୁ ଆଣିବ ! ମୁଁ କ’ଣ ମାର୍କେଟ୍ ଯାଇଥିଲ ?

କୁନ୍ତ—ଆଉ ତେବେ କ’ଣ, ମାଂସ ?

ଗୋବ—କାଇଁ, କୋଉ ଠୁଙ୍ଗା ?

କୁନ୍ତ—କିଛୁ ଜାଣିନ କୋଉ ଠୁଙ୍ଗା ?

ଗୋବ—ତମେ ଏବେ ଦେଖୁନ୍, ଠୁଙ୍ଗାରେ କ’ଣ ଅଛୁ ।

କୁନ୍ତ—ମୋର ଭେକ ସବୁ ନ ଥିଲ ମୁଁ ଓଷା—ବାହି ସଁ ବାର ଅଇଁଷ ହାତ ହଉଥିଲ ।

ଗୋବ—କିଛୁ ନଦେଖି ନଜାଣି ତମେ ଅଇଁଷ ବୋଲି କେମିତି କହୁଚ ?

କୁନ୍ତ—ଜାଣିବାକୁ ପଡେ ଆଉ ବାକି ରହୁଚ ! ଠୁଙ୍ଗାରୁ ଅଇଁଷ ପାଣି ବୋହି ଏଇ ପଟ ପିଣ୍ଡା ସାରା ହେଲାଣି ।

ଗୋବ—ତମେ ତ ଜାଣିଥିବ କୁନ୍ତଲା—ବଜାରରେ ଅଜ କାଲି ଭଲ ମାଂସ ମିଳୁ ନାଇଁ ।

କୁନ୍ତ—ତମେ ଏକାବେଳେକେ ବାଛୁ ବାଛୁ ଖାସି ମାଂସ ନେଇ ଆସିଚ ?

ଗୋବ—ସତେ କୁନ୍ତଲା, ଅଜ ଯୋଗକୁ ଗୋଟାଏ ଜାଗାରେ ଖାସି ମାଂସ ପାଇଲ । ନ ଅଣନ୍ତ କେମିତି ?

କୁନ୍ତ—ସେଇଆ ତ କହୁବ—ମାଂସ ଆସିଚ, ଚଞ୍ଚଳ ରୋଷେଇ-ବାସ ଆରମ୍ଭ କର । ମିଛଟାରେ ମତେ ଏତେ ବକର ବକର କରଉଥିଲ କାଇଁକି ? ସଧୁ—ସଧୁ—

ଗୋବ—ଶୁଣ କୁନ୍ତଳା ! ତମେ ଏମିତି ବ୍ୟସ୍ତ ହେବା ଦରକାର ନାହିଁ । ଆଜିତ ଛୁଟି । ସେଥିପାଇଁ ଏବେ ଟିକିଏ ଡେରି ହଉ । ସେମାନେ ଘଣ୍ଟାଏ ଅଧେ ଗଡ଼ାପଡ଼ା ହେଇ ଉଠନ୍ତୁ—ତା' ପରେ—

କୁନ୍ତ—ମତେ ବି ତମର ବୁଦ୍ଧି ଦବା ଦରକାର ନାହିଁ । ଛୁଟି ବୋଲି ମନ ହଉଚି ତ ତମେ ଯାଇ ଗଡ଼ପଡ଼ ହୁଅ । ଘରେ କ'ଣ ମସଲା ମସଲି ଅଛି କି ନାହିଁ··ମୁଁ ଯାଇ ଦେଖେଁ ।

(କୁନ୍ତଳା ଚାଲିଗଲେ । ବିଜ, ଇତି ଦୁହେଁ ପାଟି କରି କରି ଆସିଲେ)

ବିଜୁ—ଏଇ ଦେଖ ବାପା—ଅପା ମିଛ କହୁଚି ।

ଇତି—ବଦ୍‌ମାସ ଟୋକା—ମୁଁ ମିଛ କହୁଚି !···

ବିଜୁ—ହଁ ବାପା—ଅପା ମିଛ କହୁଚି । ଇସ୍କୁଲର ଅଙ୍କ ଧାଡ଼ି ବୁଝିଆସି ଏଠି ବାହାଦୁରି କାଢୁଚି ।

ଇତି—ଧାଡ଼ି ବୁଝିଲେ କ'ଣ ଦୋଷ ହେଇ ଗଲା ! ତତେ ମୁଁ ଗୋଟାଏ ଧାଡ଼ି ବୁଝେଇ ଦଉଚି ତୁ କହି ଦେଖି !

ଗୋବ—ଆରେ କ'ଣ—ହେଇଚି କ'ଣ ?

ଇତି—ଏଇ ଶୁଣ ବାପା—ମୁଁ କହୁଚି—

ବିଜୁ—ନାହିଁ ବାପା—ମୁଁ କହୁଚି ଶୁଣ ?

ଇତି—ଚୁପ୍ ! ମୋ' କଥାରେ ତୁ କହିବାକୁ କିଏ ?

ବିଜୁ—ତୁ ବାପାଙ୍କୁ ଠକି ପଇସା ନେଇ ଯିବୁ—ମୁଁ କହିବି ନାହିଁ !

ଗୋବ—କ'ଣ ହେଲା—ଇତି ମତେ ଠକି ପଇସା ନବ ?

ବିଜୁ—ହଁ, ବାପା, ସେ ଠକୁଚି ।

ଗୋବ—ଆଚ୍ଛା, ତା' ହେଲେ ଇତି କହୁ କ'ଣ ହେଇଚି ?

ଇନ୍ଦ୍ର—ତମେ ମତେ କହୁ ନ ଥିଲ ବାପା, ଏ ତିନି ଖଣ୍ଡ ଅଙ୍କ ମୁଁ କରି ଦେଲେ ତେମେ ମତେ ତିନିଅଣା ପଇସା ଦବ !

ଗୋବ—ହଁ, କହୁଥିଲଇ । ତୁ କରିଚୁ ?

ଇନ୍ଦ୍ର— ହଁ ବାପା—ଏଇ କରିଚି, ଦେଖ ।

ବଜୁ—ମିଛ, ମିଛ ବାପା—ସେ ଇସ୍କୁଲରୁ ଧାଇଁ ବୁଲିଆସି ଏଠି ଗାଲ୍ ପେଲୁଚି ।

ଇନ୍ଦ୍ର—ବଜୁ ! ଦେଖିବୁ ଏଇନେ ।

ବଜୁ—କ'ଣ ଦେଖିବ ?

ଗୋବ—ଆରେ ହେ ବଜୁ ଇନ୍ଦ୍ର । ଶୁଣ । ସେ କଥା ବୁଝାହବ । ଏଠି ଏମିତି ପାଟିତୁଣ୍ଡ କରିବାକୁ ମୁଁ ତମକୁ ଡାକି ନ ଥିଲି ଏଠି ତୁନି ହୋଇ ବସ ।

ବଜୁ—କାହିଁକି ବାପା ?

ଗୋବ—ତୁ ସେତେବେଳେ କହୁଥିଲୁ ନା—ବୋଉ କାଲି ଉପାସ କରି ହାଲିଆ ହୋଇ ପଡ଼ିଚି—ତା' ମନ ଭଲ ନାହିଁ । ତେମେ ଏମିତି ପାଟିତୁଣ୍ଡ କଲେ ସେ ବିରକ୍ତ ହବ !

ବଜୁ—ଏମିତି ତା' ହେଲେ ତୁନି ହୋଇ ବସିବା ?

ଗୋବ—ହଁ ।

ଇନ୍ଦ୍ର—ନାହିଁରେ ବଜୁ—ତୁନି ହୋଇ କିଏ ଗୋଟାଏ ବସେ ! କେତେ ବେଳ ଯାଏ ଏମିତି ବସିବା !

ଗୋବ—ନାହିଁ, ଖାଲି ବସିବା କଥା ନୁହେଁ—କିଛି ଗୋଟାଏ କାମ କରିବାକୁ ହବ ।

ବଜୁ—କି କାମ ବାପା ?

ଗୋବ—ଇନ୍ଦ୍ର-ଏ ଟେବୁଲ୍‌ଟା ପାଇଁ ତୁ ଗୋଟାଏ ଟେବୁଲ୍ କ୍ଲଥ୍ କରୁଥିଲୁ ନାଁରେ ?

ଇଭ —ହେଲା ନାହିଁ ପରା ବାପା ।

ଗୋବ—କାହିଁକି ?

ଇଭ—ଛ' କୋଣିଆ ଟେବ୍ଲଟା—ମାପ ଭୁଲ୍ ହୋଇ ଯାଉଚି ।

ଗୋବ—ଭୁଲ୍ କାହିଁକି ହଉଚି ? ଅଚ୍ଛା, ଘରେ ଆଉ କାଠ ଅଛି ?

ଇଭ—ହଁ, ଏଇ ଭାଗ୍—କନା ଆଣି ରଖିଚି ।

ଗୋବ—ଅଚ୍ଛା, ଆଜି ମୁଁ ମାପ ଠିକ୍ କରି ଦଉଚି । ତୁ କାମ ଆରମ୍ଭ କର ।···କୋଉଥିରେ ମାପିବା ?

ବଜ୍ରୁ—ସ୍କେଲ୍ ଅଛି—ଆଣିବି ।

ଗୋବ—ନା—ନା—ସ୍କେଲ୍‌ରେ ହବ ନାହିଁ । ଗୋଟାଏ ବଢ଼ ଫିତା କି ଡୋର ଆଣ ।

ବଜ୍ରୁ—ଆଣୁଚି ବାପା ! ( ପ୍ରସ୍ଥାନ )

ଇଭ—ସତରେ ବାପା, କୋଉ ମନ ଆଜି ଖରାପ୍ ?

ଗୋବ—ହଁ, ଭେବେ ଆମେ ଟିକିଏ ଏଣେ ତୁନି ଭାନ୍ ହୋଇ ରହିଲେ ସବୁ ଠିକ୍ ହୋଇ ଯିବା ନଇଲେ ମାଂସ ଖିଆ ଆଜି ବନ୍ଦ୍ । ( ବଜ୍ରୁ ଆସିଲା )

ବଜ୍ରୁ—ଏଇ ବାପା—ଏଇ ଫିତାଟା ନିଅ ।

ଇଭ—ହେ, ହେ, ବଦମାସ୍ ଟୋକା ମୋ' ରିବନ୍‌ଟା ନେଇ ଆସିଚୁ ?

ବଜ୍ରୁ—ଆଣିଚି ତ କଣ ହେଲା ? ତୋ'ର କାମ ତ ହବ ।

ଇଭ—ମୁଁ ସାବୁନ ଦେଇ ରିବନ୍‌ଟା ସଫା କରି ରଖିଥିଲି—ଦେ' ମୋ' ରିବନ୍ ।

ବଜ୍ରୁ—ନା ଦେବି ନାହିଁ ।

ଇଭ—ବଜ୍ରୁ !!

ବଜ୍ରୁ—ଦେବ ନାହିଁ—ଦେବ ନାହିଁ—ଦେବ ନାହିଁ ।
ଇନ୍ଦ୍ର—(କାନ୍ଦ କାନ୍ଦ ହୋଇ) ଏଇ ଦେଖ ବାପା—
ବଜ୍ରୁ—ଏଇରେ ନାକକାନ୍ଦୁଣୀ ! ନାକରେ କାନ୍ଦଲେ—
ଇନ୍ଦ୍ର—ବଜ୍ରୁ, ଦେଖିବୁ ଏଇନେ—
ବଜ୍ରୁ—ଇନ୍ଦ୍ରଣୀ ନାକକାନ୍ଦୁଣୀ ପୁସୁଣେ—ଇନ୍ଦ୍ରଣୀ ନାକ୍ କାନ୍ଦୁଣୀ ପୁସୁଣେ—
ଗୋବ—ହେ ବଜ୍ରୁ; ହେ ଇନ୍ଦ୍ର । ଆରେ ମୁଁ ତମକୁ ତୁନି ହୋଇ ରହିବାକୁ କହିଲି ପରା—
ଇନ୍ଦ୍ର—ମୋ' ରବର୍‌ରେ ଟେଲ୍ଟ ମାପ ହବ ବାପା ?
ଗୋବ—ନାହିଁ । ତୋ ରବର୍ ତୁ ନେ' । ମାପିବା ପାଇଁ ଆଉ ଗୋଟାଏ କ'ଣ ଆଣ୍ ଯା ।
ଇନ୍ଦ୍ର—ଆଣୁଚି । (ପ୍ରସ୍ଥାନ)
ବଜ୍ରୁ—ରବର୍‌ଟା ଅପାକୁ ଦେଇ ଦେଲେ ବାପା ?
ଗୋବ—ଦେବ ନାହିଁ !! ତୁ ଜାଣିଶୁଣି ତା' ରବର୍‌ଟାକୁ କାହିଁକି ଆଣିଥିଲୁ ?
ବଜ୍ରୁ—ସେଇଟାରେ ଭଲ ମାପି ହୋଇ ଥା'ନ୍ତା ପରା । (ଇନ୍ଦ୍ର ଆସିଲା)
ଇନ୍ଦ୍ର—ଏଇ ନିଅ ବାପା—ଏଇ ଡୋରଟା ।
ବଜ୍ରୁ—ଦେଖି ଦେଖି, ସେଇଟା କ ଡୋର୍ ?
ଇନ୍ଦ୍ର—କଣ୍ଠ ନୁହେଁ । କାଗଜ ଟିଣରେ ପଡ଼ିଥିଲା, ମୁଁ ଆଣିଚି ।
ବଜ୍ରୁ—ଇରେ—ଏଇଟା ତ ମୋ' ନଟୁଡ଼ୋର ! ଦେ' ମୋ' ଡୋର ଦେ ।
ଇନ୍ଦ୍ର—ତୁ'ଟା ପୁରୁଣା ଗାଲୁଆ । ଏଇଟା ମୋଟେ ତୋ'ର ନୁହେଁ —ମୁଁ ଦେବିନି ।
ବଜ୍ରୁ—ଦବୁନି ?

Source: Author, Digitized by PPRACHIN, SOA

ଇତି—ନା ଦେବିନି ।

ବିଜୁ—ଦେଖେଁ କେମିତି ଦବୁନି ? ( ତୋରଟାକୁ ଧରି ଟାଣିଲା )

ଇତି—ଇରେ—ଇରେ—ଏମିତି ଟାଣୁଚୁ କାହିଁକି ? ମୋ' ହାତ ଗଲା—ହାତ···

କୁନି—(ଦୂରରୁ) ସେଠି କ' ପାଳି ଲଗିଚି ! ଛୁଆ ଦ'ଟାକୁ ପାଞ୍ଚ ମିନିଟ୍ ସମ୍ଭାଳି ପାରୁନ ?

ଗୋବି—(ବଡ଼ପାଟିରେ) ତାଙ୍କ ପାଇଁ ତମର ବ୍ୟସ୍ତ ହେବା ଦରକାର ନାହିଁ—ମୁଁ ତାଙ୍କ କଥା ବୁଝୁଚି ।

ଇତି—ଏଇ ଦେଖିଲ ବାପା···

ଗୋବି—ଆସ୍ତେ କହ ।

ଇତି—(ଆସ୍ତେ) ଏଇ ଦେଖିଲ, ତୋରଟା ଧରି ଟାଣି ଦେଲା—ମୋ' ହାତ କେମିତି ଲାଲ ପଡ଼ିଗଲା ।

ଗୋବି—ହଇରେ ହେ ବିଜୁ ! ବଦମାସ ଟୋକା ?

ବିଜୁ—ତା ରିବନ୍‌ରେ ଯଦି ମଜା ନହେବ—ମୋ ତୋରରେ କାହିଁକି ମଜା ହେବ ?

ଗୋବି—ତା' ରିବନ୍ ଥାଉ, ତୋ' ତୋରଦି ଥାଉ । ଏଇ ମୋ'ର ସେ ତିନି ପାଇଜାମାରୁ ସେ ପିତାଟା ଅଣ୍ ।

ବିଜୁ—ତମ ପାଇଜାମାରୁ ଫିତାଟା ଅଣିବି ବାପା ?

ଗୋବି—ହଁ ଯା, ଅଣ୍ କହୁଚି । (ଇତି ଯାଇ ଆଣିଲା)

ଇତି—ଏଇ ନିଅ ବାପା । ମୁଁ ଆଣିଲଣି ।

ଗୋବି—ଅଚ୍ଛା, ଟେଲେ ଟା ଟିକିଏ ଏଣିକି ଦିଅଇ ଅଟେ ! ହଁ । ଦେଖି ଫିତାଟା ଦେଖି—ବିଜୁ, ତୁ ଏ ପାଖରୁ ଟାଣ—ଏଇଟି ଟିକି ରହିଲା । ଟିପ ଛାଡ଼ିବୁ ନାହିଁ । ଅଚ୍ଛା, ଇତି—

ତୁ ଏଇ, ଏଇଠୁ ଧର—ମୁଁ କନାରେ ମାପ ନାଏ। କେହି
ଟିପ ଛୁଡ଼ିବ ନାହିଁ। ..

(ସମସ୍ତେ କାମରେ ଲାଗି ପଡ଼ିଲେ। ଏତିକବେଳେ ଝରକା
ସେ ପାଖରେ ଜଣେ ଏଜେଣ୍ଟ ଦେଖା ଦେଲେ।)

ଏଜେଣ୍ଟ—ଭିତରକୁ ଆସିପାରେ କି ସାର୍?

ଗୋବ—(କାମ କରୁ କରୁ ଅନ୍ୟ ମନସ୍କ ଭାବେ) ଆସନ୍ତୁ।

ଏଜେଣ୍ଟ—ଏକାବେଳକେ ଏ ଘର ଭିତରକୁ ଯିବି ସାର୍?

ଗୋବ—ନିଶ୍ଚୟ!

ଏଜେଣ୍ଟ—ଧନ୍ୟବାଦ ସାର୍।

ବଜୁ—ସେ କିଏ ବାପା?

ଗୋବ—ଏଁ କିଏ!

ଇତି—ତାଙ୍କୁ ପରା ଘର ଭିତରକୁ ଆସିବାକୁ କହିଲ? ସେ ଦେଇ,
ସେ ବାଟେ ବୁଲି ଆସୁଚନ୍ତି।

ଗୋବ—ଆରେ ସତେତ, ଏ ଟେବଲ ମାପ ଗୋଳମାଳରେ
ମୁଁ କାହାକୁ କଣ କହି ଦେଲି—

ବଜୁ—ଏଇ ସେ ଆସିଲେଣି। (ଏଜେଣ୍ଟ ଆସିଲେ)

ଗୋବ—ଆପଣ କିଏ?

ଏଜେଣ୍ଟ—ଏଇ ଚେୟାରଟାରେ ବସିବି ସାର୍?

ଗୋବ—ମୁଁ ତ ଆପଣଙ୍କୁ ଚିହ୍ନି ପାରୁ ନାହିଁ।

ଏଜେଣ୍ଟ—ମୁଁ ଯେତେବେଳେ ଆପଣଙ୍କୁ ଚିହ୍ନିଚି ସାର୍—

ଗୋବ—ଆପଣ ଏତେ 'ସାର୍' 'ସାର୍' କହୁଚନ୍ତି କାହିଁକି?

ଏଜେଣ୍ଟ—ଇଂରେଜମାନେ ଯେ କେତୋଟି ଭଲ ଜିନିଷ ଏ
ଦେଶରେ ଛାଡ଼ି ଯାଇଚନ୍ତି—ତା ଭିତରୁ ଏଇ 'ସାର୍'

ସମ୍ବୋଧନ କରିବା ପ୍ରଥାଟି ବୋଧହୁଏ ସବୁଠୁ ବେଶୀ ଲୋକପ୍ରିୟ ।

ଗୋବ—ଆପଣ କିଏ ?

ଏଜେଣ୍ଟ—ଏଇ ଚେୟାର୍‌ଟାରେ ବସିବାର ଅନୁମତି ଦେଲେ ତ ?

ଗୋବ—ବସନ୍ତୁ ।

ଏଜେଣ୍ଟ—ବହୁତ ଧନ୍ୟବାଦ୍ ସାର୍ ।

ଗୋବ—ପୁଣି ସେଇ 'ସାର୍' ?

ଏଜେଣ୍ଟ—ସତ କହିଲେ ସାର୍ ! ଦୁଇଟି ଅକ୍ଷରର ଏଇ ଛୋଟ ଶବ୍ଦଟି କ'ଣ ଦୁଇଜଣ ଅପରିଚିତ ଲୋକଙ୍କ ଭିତରେ ଥିବା ଦୁଇ ଯୋଜନ-ବ୍ୟାପୀ ବ୍ୟବଧାନକୁ ଦୁଇ ସେକେଣ୍ଡ ଭିତରେ ଦୂର କରି ଦେଇ ପାରୁନି !!

ଗୋବ—ଆପଣ କଣ କୋଉ କମ୍ପାନୀର ଏଜେଣ୍ଟ ?

ଏଜେଣ୍ଟ—ଯେତିକି ପରିଚୟ ଆପଣଙ୍କର ମୁଁ ପାଇଚି ସେତିକିରୁ ମୁଁ ଜାଣେ, ଆପଣ ଜଣେ ଦୂରଦୃଷ୍ଟି-ସଂପନ୍ନ···

ଗୋବ—(ବାଧାଦେଇ) ମୋ' ଦୂରଦୃଷ୍ଟିର କଥା ଥାଉ । ମୋ' ଆଖିର ଏଇ ସାଧାରଣ ଦୃଷ୍ଟିପାତରେ ମୁଁ ଯାହା ଅନୁମାନ କରୁଚି—କ୍ଷମା କରିବେ—ମୋ' ଅନୁମାନ ହୁଏତ ଭୁଲ୍ ହୋଇପାରେ ।···

ଏଜେଣ୍ଟ—ଆପଣଙ୍କ ଅନୁମାନ ଭୁଲ୍ ହେଲେ ମୋର ଏଠିକି ଆସିବାର ସବୁ ପ୍ଲାନ୍ ଯେ ଭୁଲ୍ ହୋଇଯିବ ସାର୍—!

ଗୋବ—ଆପଣ ତା'ହେଲେ ଜଣେ ଏଜେଣ୍ଟ ?

ଏଜେଣ୍ଟ—ଆଜ୍ଞା, ସାର୍ ।

ଗୋବ—କାହିଁ, ଆପଣଙ୍କ ହାତରେ ତ ବ୍ୟାଗ୍ ପ୍ରଭୃତି କିଛି ଦେଖୁ ନାହିଁ ?

ଏଜେଣ୍ଟ—ମୋର ଏଜେନ୍‌ସି ଥିବା ପର୍ଯ୍ୟନ୍ତ କେବେ ବି ଦେଖିବେ ନାହିଁ ସାର୍ !

ଗୋବ—କାହିଁକି ?

ଏଜେଣ୍ଟ—ଏହାହିଁ ଆମ କମ୍ପାନୀର ବିଶେଷତ୍ୱ । କମ୍ପାନୀର ଶହେ ଏକୋଇଶି ଜଣ ଏଜେଣ୍ଟଙ୍କ ଭିତରୁ ବ୍ୟାଗ୍ ଅଛି ମାତ୍ର ଜଣଙ୍କର ।

ଗୋବ—କିଏ ସେହି ଭାଗ୍ୟବାନ ?

ଏଜେଣ୍ଟ—ଭାଗ୍ୟବାନ ନୁହେଁ ସାର୍—ଭାଗ୍ୟବତୀ ।

ଗୋବ—ମାନେ ?

ଏଜେଣ୍ଟ—ଶହେ ଏକୋଇଶି ଏଜେଣ୍ଟ ଭିତରୁ ଶହେ କୋଡ଼ିଏ ପୁରୁଷ—କେବଳ ମାତ୍ର ମହିଳା । ଏହି ମହିଳା ଏଜେଣ୍ଟ ହେଉଛନ୍ତି ବ୍ୟାଗ-ଧାରଣୀ—ମାନେ ସାର୍, ଏଜେଣ୍ଟସ୍ ବ୍ୟାଗ ନୁହେଁ,—ଭ୍ୟାନିଟି ବ୍ୟାଗ-ଧାରଣୀ !

ଗୋବ—(ହସିଉଠି) ଓ ଏଇକଥା, ଆଚ୍ଛା, ଆପଣଙ୍କର କମ୍ପାନୀର ଏଜେଣ୍ଟମାନେ ବ୍ୟାଗ ଧରନ୍ତି ନାହିଁ କାହିଁକି ?

ଏଜେଣ୍ଟ—ଥିଏଟର୍ ହଉଚି । ପରଦା ଉଠିଲା । ରଙ୍ଗମଞ୍ଚରେ ଦେଖାଦେଲା ନାଟକର ନାୟିକା । ଦର୍ଶକ ଯଦି ନାୟିକାର ରୂପ ଦେଖି—ତା'ର ଅଭିନୟ ଦେଖି ବୁଝି ପାରିଲା ନାହିଁ ଯେ ସେ ନାଟକର ନାୟିକା ବୋଲି—ସେ ଯଦି ନାୟିକାର ସ୍ଲିପ ପରିଚୟ ପାଇବା ପର୍ଯ୍ୟନ୍ତ ଅପେକ୍ଷା କରି ରହିଲା—ତା'ହେଲେ ସାର୍, ସେ ଦର୍ଶକ, ଦର୍ଶକ ନୁହେଁ, କିମ୍ବା ସେ ନାୟିକା, ନାୟିକା ନୁହେଁ ।

ଗୋବ—ଆପଣଙ୍କ ବେଶ୍ କଥା କହି ପାରନ୍ତି ?

ଏଜେଣ୍ଟ—ଅନ୍ଧକୁ ନାଲ୍ ରଙ୍ଗର ମହିମା ବୁଝାଇ ତା' ମନରେ ନାଲ ରଙ୍ଗର ଗୋଟାଏ ଧାରଣା ଦେବା, ଏକ ହାସ୍ୟାସ୍ପଦ ବ୍ୟାପାର । କିନ୍ତୁ ଯା'ର ଆଖି ଅଛି, ସିଏ, ଜୀବନରେ ମାତ୍ର ପ୍ରଥମଥର ପାଇଁ ନାଲରଙ୍ଗ ଦେଖିଲେ ବି, ତା'ପକ୍ଷରେ, ଏ ରଙ୍ଗର ମହିମା ବୁଝିବା ବୋଧେ ଦୁଃସାଧ୍ୟ ହେବ ନାହିଁ ।

ଗୋବ—ବୁଝିଲି । ଆପଣଙ୍କୁ ଦେଖି, ଆପଣଙ୍କ କଥା ଶୁଣି, ଆପଣଙ୍କୁ ଜଣେ ଦକ୍ଷ ଏଜେଣ୍ଟ ବୋଲି ଗ୍ରହଣ କରି ନେବାରେ କାହାର ଅସୁବିଧା ହେବନାହିଁ—ଏଇଆ ଆପଣ କହୁଛନ୍ତି ତ ?

ଏଜେଣ୍ଟ—ଏଇଟା ଛ ସାର୍, ମୋର କହିବା କଥା—ମୁଁ କହିଲି । ଏ ସମ୍ପର୍କରେ ମୋର ପୁଣି ଗୋଟାଏ ନ କହିବାର କଥା ଅଛି ।

ଗୋବ—ତା'ହେଲେ ସେ କଥା ଶୁଣିବାର ଭାଗ୍ୟ ଆମର ନାହିଁ ।

ଏଜେଣ୍ଟ—ମତେ ଆଉ ଲଜ୍ୟା ଦିଅନ୍ତୁ ନା ସାର୍ । ଆପଣଙ୍କ ପାଖରେ ମୋର କିଛି ହେଲେ ଅଲୁହା ରହି ମୁଁ ଏଠୁ ଯାଇ ପାରିବିନି !

ଗୋବ—ମୋ ପାଖରେ ଆପଣ କିଛି ବ୍ୟବସାୟ କରିବେ, ଏଇ ଆଶାରେ ଆପଣ ଆସିଚନ୍ତି, ମୁଁ ଜାଣେ । ବ୍ୟବସାୟ ଆପଣଙ୍କର ହଉ ବା ନ ହଉ ମୁଁ ଆପଣଙ୍କୁ ମୋର ଜଣେ ଅତିଥି ବୋଲି ଗ୍ରହଣ କରି ନେଇଚି

ଏଜେଣ୍ଟ—(ଖୁସିରେ) ସାର୍ !

ଗୋବ—ଗ୍ଟ' ଖାନ୍ତୁ ।

ଏଜେଣ୍ଟ—(ଅଧିକ ଖୁସିରେ) ସାର୍ !!

ଗୋବ—ବଳୁ ! ଟବୋବ୍ତକୁ କହିଦେ ଏ ବାବୁଙ୍କ ପାଇଁ ଗ୍ଲ'ସଟେଇ ନେବେ । (ଠକୁର ପ୍ରସ୍ଥାନ ) ହିଁ, ଯାହା ମୁଁ ଆପଣଙ୍କୁ କହୁଥିଲି—ଆପଣଙ୍କୁ ମୁଁ ଅତିଥି ବୋଲି ଗ୍ରହଣ କରି ନେଇଚି । ଅତଏବ ମୋ ପାଖରେ ଆପଣମାନଙ୍କର ସେଇ ମାରଟେପଞ୍ଚ୍ କଥା ନ କହିଲେ ମୁଁ ଖୁସି ହେବ ।

ଏଜେଣ୍ଟ—ଅସମ୍ଭବ ସାର୍—ଅସମ୍ଭବ । ମୁଁ ସେ ସବୁ ମାରପେଞ୍ଚ୍ କଥାର ବହୁ ଦୂରରେ ନିଜକୁ ରଖିଥାଏ । ଶୁଣନ୍ତୁ ··· ସାର୍ । ମୋ ନ କହିବା କଥା ଶୁଣନ୍ତୁ । ବ୍ୟାଗଧରି ଏଜେଣ୍ଟ ଦେଖିଲେ ବହୁ ସ୍ଥାନରେ ଆତଙ୍କରେ ଛାତି କବାଟ ପଡ଼ିଯାଏ । ଆପଣ ମତ କହିଲେ ସାର୍—ଏଇ ଫରକା ସେ ପାଖରେ ମୁଁ ଦେଖେଁବେଳ ଆପଣଙ୍କୁ ହସି ହସି ଅଭିବାଦନ ଜଣାଇଲି, ଆପଣ ଯଦି ମୋ ହାତରେ ଗୋଟିଏ ହତଶି ଇଞ୍ଚରେ କୋଡ଼ିଏ ଇଞ୍ଚ ବ୍ୟାଗ ଦେଖି ଥାନ୍ତେ—ତେବେ ମୋତେ କ'ଣ ଆପଣଙ୍କର ଏ ଅନ୍ଦର ମହଲକୁ ସାଦର ନିମନ୍ତ୍ରଣ ଜଣେଇଥାନ୍ତେ ?

ଟୋବ—ତା'ହେଲେ ଆପଣ ଅତି ସହଜରେ ମତେ ଠକିଛନ୍ତି ?

ଏଜେଣ୍ଟ—ନା ସାର୍; ନାଁ । ଠକିବାର ପ୍ରଶ୍ନ ମୋଟେ ଏଠି ଉଠୁନି । ମୋର ଏଠାକୁ ଆସିବାର ମୂଳ ଉଦ୍ଦେଶ୍ୟ ଯେତେବେଳେ ଆପଣଙ୍କୁ ଠକିବା ନୁହେଁ—ଏ ଘର ଭିତରକୁ ଆସିବା ପାଇଁ ମୁଁ ଠକାମୀର ଆଶ୍ରୟ ନେବି କାହିଁକି ?

ଗୋବ—ଅଚ୍ଛା ଏଥର ତା'ହେଲେ ଆସିବାର ଉଦ୍ଦେଶ୍ୟଟା ଦୟାକରି କୁହନ୍ତୁ ? ଆପଣ କେଉଁ କମ୍ପାନୀର ଏଜେଣ୍ଟ ?

ଏଜେଣ୍ଟ—କୁମ୍ଭକର୍ଣ୍ଣ—ବଳାସ—ବଟିକା ମାନୁଫାକ୍‌ଚରିଙ୍ଗ୍ କମ୍ପାନୀ ।

ଗୋବ—ଅଦ୍ଭୁତ !! ରମାୟଣ ଯୁଗର କୁମ୍ଭକର୍ଣ୍ଣ ସହିତ ଏ ଯୁଗରେ ଇଂରାଜୀ ଶବ୍ଦ ମିଶେଇ ଆପଣ ଏକ କମ୍ପାନୀ ଗଢ଼ିଛନ୍ତି ମହାଶୟ ? କୁମ୍ଭକର୍ଣ୍ଣ—ବଲାସ—ବଟିକା ? ମାନେ ? ନିଦ ଔଷଧ ?

ଏଜେଣ୍ଟ—ଯଥାର୍ଥ କହୁଛନ୍ତି ସାର । ବର୍ତ୍ତମାନ ଯୁଗର ପରିସ୍ଥିତିରେ ଯେଉଁ ଅଶାନ୍ତି ଓ ଉଦବେଗ୍ ଦେଖା ଯାଉଚି—ସାଧାରଣ ଲୋକେ ଟିକିଏ ଶାନ୍ତିରେ ଶୋଇବାର ଉପାୟ ନାହିଁ । ଏପରିକି ଡନଦନ ଡନଗ୍ରତ ଅନିଦ୍ରାହେଇ ମଧ୍ୟ ଲୋକଙ୍କ ଆଖିକୁ ନିଦ ନ ଆସିବାର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳୁଚି···ମୁଁ ମିଛ କହୁଚି ସାର୍ ?

ଗୋବ—ନା ! ମୁଁ ନିଜେ ଜଣେ ଏଇ ରୋଗର ରୋଗୀ । କିନ୍ତୁ ଆପଣ ମୋର ଏ ରୋଗର ସନ୍ଧାନ ପାଇଲେ କେମିତି ?

ଏଜେଣ୍ଟ—ସେତିକି ବାହାଦୁରୀ ନଥିଲେ ମୁଁ କୁମ୍ଭକର୍ଣ୍ଣ କମ୍ପାନୀରେ ଗଲ ସାତବର୍ଷ ଧରି ଏଜେଣ୍ଟ ହୋଇ ରହି ପାରି ନଥାନ୍ତି ।

ଗୋବ—ଶୁଣିଚି, ନିଦ ପାଇଁ ଔଷଧ ଖାଇବା ଶରୀର ପକ୍ଷରେ କ୍ଷତିକାରକ ?

ଏଜେଣ୍ଟ—ଖାଦ୍ୟପାଇଁ ମାଂସ ଖାଇବା ମଧ୍ୟ ବେଳେ ବେଳେ ଶରୀର ପାଇଁ ଅପକାର କରିଥାଏ । କିନ୍ତୁ ମାଂସର ଖାଦ୍ୟସାର-ଟାକୁ ଆପଣ ଅସ୍ୱୀକାର କରି ପାରିବେକି ସାର୍ ?

ଗୋବ—ହୁଁ ! ଆପଣଙ୍କ କମ୍ପାନୀର ଔଷଧ ଯେ ନିଦ ପାଇଁ ଅବ୍ୟର୍ଥ, ଏହାର ପ୍ରମାଣ କଣ ?

ଏଜେଣ୍ଟ—ପ୍ରମାଣ ମୁଁ ନିଜେ ସାର୍ । ଆପଣଙ୍କ ସାମନାରେ ଗୋଟିଏ ମାତ୍ର ବଟିକା ଖାଇ ଏଇଠି ଦୀର୍ଘ ବାର ଘଣ୍ଟା ମୁଁ ଶୋଇ ଯିବି । ମୋ ଉପରେ ଚୁ ଚୁ ପାଣି ଡାଳିଲେବି

ମୁଁ ଉଠିବନି । କିନ୍ତୁ ସାର୍ ମୋ ଔଷଧର ପ୍ରମାଣ କଣ ଆପଣ ନିକେ ଏଯାଏଁ ପାଇ ନାହାନ୍ତି ?

ଗୋବ—ମୁଁ କପର ପ୍ରମାଣ ପାଇବ ? ମୁଁ ତ କେବେ ଆପଣଙ୍କର ଔଷଧ ଖାଇନି ?

ଏଜେଣ୍ଟ—ଆପଣ ଖାଇ ନାହାନ୍ତି ସତ—କିନ୍ତୁ ··(ବଜୁ ଆସିଲା)

ବଜୁ—ବାପା—ବାପା ! ସୁଧୁ ସାଧୁ ମୋଟେ ନିଦରୁ ଉଠୁ ନାହାନ୍ତି । ବୋଉ ଡାକ ଡାକ ଥକି ଗଲାଣି ।

ଗୋବ—ତାଙ୍କୁ ଏବେ ଉଠେଇବ କାହିଁକି ? କାଲି ସାରା ରାତି ଅନିଦ୍ରା ହେଇ ସେ ଦୁ'ଟା ତ ଶୋଇଚନ୍ତି । ତାଙ୍କୁ ଉଠେଇବା ଦରକାର ନାହିଁ । ବୋଉକୁ କହ ରୁ କରି ଦବ ।

ବିଜୁ—ହେଲେ ମାଂସ ରାନ୍ଧିବ କିଏ ? ବୋଉ ପରା ଅଜା ମାଂସ ଛୁଇଁବ ନାହିଁ ।

ଏଜେଣ୍ଟ—ଲୁଚି ବାବୁ ଏଠିକି ଆସନ୍ତୁ ।

ବଜୁ—କ'ଣ ?

ଏଜେଣ୍ଟ—ସୁଧୁ—ସାଧୁ ନିଦରୁ ଉଠୁ ନାହାନ୍ତି ?

ବଜୁ—ନା । ତାଙ୍କୁ ଠେଲିଲି ଡେଇ ଉଠେଇଲେବି ଉଁ କି ଚୁ ହଉ ନାହାନ୍ତି । ଏକାବେଳେକେ ନିଘୋଡ଼ ନିଦରେ ଶୋଇଚନ୍ତି ।

ଏଜେଣ୍ଟ—ଦେଖିଲେତ ସାର୍—ମୋ ବଟିକାର ଗୁଣ ଦେଖିଲେ ତ !

ଗୋବ—ମାନେ ?

ଏଜେଣ୍ଟ—ସୁଧୁ, ସାଧୁ କେମିତି ନିଘୋଡ଼ ନିଦରେ ଶୋଇଚନ୍ତି !

ଗୋବ—ସେମାନେ ତ ଜାଗର ଯାତ୍ରା ଦେଖି ରାତି ଅନିଦ୍ରା ହୋଇ ଶୋଇଚନ୍ତି ।

ଏଜେଣ୍ଟ—ଏ ସ୍ପୁଟ୍‌ନିକ ଯୁଗରେ ଖାଲି ରାତି ଅନିଦ୍ରା ହୋଇ କେହି ଏମିତି ଆରାମରେ ଶୋଇ ପାରେ ? ଇଏ ମୋ ଔଷଧର ଗୁଣ ।

ଗୋବ—ମାନେ ? ସେ ଦୁହେଁତ ଖାଲି ରାତରେ ପରମହଂସ ଯାଇଥିଲେ ।

ଏଜେଣ୍ଟ—ସେଇ ପରମ ମିଳନ ସ୍ଥଳ ପରମହଂସ ସାର୍ । ସେଇଠି ରାଧୁ, ସାଧୁଙ୍କ ସହ ମୋର ଭେଟ । ସେଇଠି ମୁଁ ଶୁଣିଲି ତାଙ୍କ ଦୁଃଖ, ଯେ ରାତି ସାରା ଅନିଦ୍ରା ହୋଇ ମଧ୍ୟ ସକାଳେ ଟିକଏ ଶୋଇବାର ଉପାୟ ତାଙ୍କର ନାହିଁ ।

ଗୋବ—(ବ୍ୟଙ୍ଗ କରି) ଅତଏବ ତାଙ୍କ ଦୁଃଖ ଦୂର କରିବା ପାଇଁ ଆପଣ ରାଧୁ ସାଧୁଙ୍କୁ କୁମ୍ଭକର୍ଣ୍ଣ-ବିଳାସ-ବଟିକା ଦାନ କଲେ ।

ଏଜେଣ୍ଟ—ଦାନ ନୁହେଁ ଆଜ୍ଞା ! ବିକ୍ରୀ କରିଚି ।

ଗୋବ—କେତେ ଦାମ ନେଇ ବିକ୍ରୀ କଲେ ଆଜ୍ଞା ?

ଏଜେଣ୍ଟ—ଖୁବ୍ ମଡ଼ରେଟ୍ ଦାମ୍ ସାର—ଦୁଇଟି ବଟିକାକୁ ମାତ୍ର ଦ' ଟଙ୍କା ! (ଇତି ଆସିଲା)

ଇତି—ବାପା, ପାଣି ଢାଳିଲେ ବି ରାଧୁ ସାଧୁ ଉଠୁ ନାହାନ୍ତି । ଏତେ ଜୋରରେ ଘୁଙ୍ଗୁଡ଼ି ମାରି ଶୋଇଚନ୍ତି । ବୋଉ ଘରୁ ବ୍ୟସ୍ତ ହଉଚି ।

ଏଜେଣ୍ଟ—ବୋଉଙ୍କୁ କହି ଦିଅ ମା···ବ୍ୟସ୍ତ ହବାର କିଛି ନାହିଁ । ଇଏ ମୋ ଔଷଧର ଗୁଣ । ମୁଁ ଯାହା କହିଥିଲି ସାର୍ ହାତେ ହାତେ ପ୍ରମାଣ—ପାଣି ଢାଳିଲେ ବି ନିଦ ଭାଙ୍ଗିବ ନାହିଁ ।

ଗୋବ—ଅଚ୍ଛା ବାବୁ, ଆପଣଙ୍କୁ ଆଉ କୋଉଠି ଔଷଧ ବିକିବାକୁ ସ୍ଥାନ ମିଳିଲା ନାହିଁ ଯେ ମୋର ଘରବାଡ଼ରେ ଏ ବିଭ୍ରାଟ ସୃଷ୍ଟିକଲେ !! ଅପଣଙ୍କ ଔଷଧ ଖାଇ ସଞ୍ଜାରୁ ସେ ଦ'ଟା କୁମ୍ଭକର୍ଣ୍ଣ ପରି ଶୋଇଛନ୍ତି—ଆଉ ଆମର ଏଣେ ପ୍ରାଣ ଯାଉଛି !!

ଏଜେଣ୍ଟ—ମୁଁ କଣ ଭୁଲ୍ କଲି ସାର୍ କୁହନ୍ତୁ ? କୁମ୍ଭକର୍ଣ୍ଣ ବିଳାସ ବଟିକା ଖାଇଲେ ତ କୁମ୍ଭକର୍ଣ୍ଣର ନିଦ ଆସି ଘୋଟିଯିବ !

ଗୋବ—କିନ୍ତୁ ଅପଣ ଭୁଲିଯାନ୍ତୁ ନାହିଁ ଯେ ଏଇଟା ହଉଚି ସ୍ୱବଣର ସଂସାର !! ପୁଷ୍ୟାଗ୍ନି ଗୃହକର କୁମ୍ଭକର୍ଣ୍ଣ ପରି ଶୋଇଲେ ଆମେ ଖାଇବୁ କଣ ? ... ଅପଣଙ୍କର ତ ସାହସ କମ୍ ନୁହେଁ ଦେଖୁଚି ! ମୋର ପୁଷ୍ୟାଗ୍ନି ଗୃହକରକୁ ନିଦ ଔଷଧ ଖୁଆଇ ମୋ ପାଖରେ ବ୍ୟବସାୟ କରିବାକୁ ଆସିଛନ୍ତି !

ଏଜେଣ୍ଟ—ଖାଲି ବ୍ୟବସାୟ ନୁହେଁ ସାର୍—ମୁଁ ଅପଣଙ୍କ ଅତିଥି ।

ଗୋବ—ଯୋଉ ଅବସ୍ଥାରେ ଅପଣ ଆମକୁ ପକେଇଛନ୍ତି ନା' ମତେ ଆଜି ଯାଇ ଆଉ କାହା ଘରେ ଅତିଥି ହବାକୁ ପଡ଼ିବ ।

ଏଜେଣ୍ଟ—ତା' ହେଲେ ସାର୍—

ଗୋବ—ଭଲ ହୋଇ ଏଠୁ ଚାଲି ଯା'ନ୍ତୁ ।

ଏଜେଣ୍ଟ—ଅପଣଙ୍କ ରୋଗଟା—ଏଇ ନିଦ୍ରାଭଙ୍ଗ !

ଗୋବ—ଅପଣ ଏଠି ଥିବା ପର୍ଯ୍ୟନ୍ତ ମତେ ଜଳାତଙ୍କ, କ୍ଷୁଧାତଙ୍କ ଆଦି ସବୁ ରୋଗ ଘୋଟିଯିବାର ଆଶଙ୍କା ରହୁଚି । ଅପଣ ଯା'ନ୍ତୁ—

ଏଜେଣ୍ଟ— ନିଦ୍ରାଭଙ୍ଗ ତା' ହେଲେ ଯିବି ସାର୍ ?

ଗୋବ—(ବଡ଼ ପାଟିରେ ) ବଜ୍ରୁ, ବୋଉକୁ କହ—ଟ୍ଟ' ନ କରି
ସେଇ ଗରମ ପାଣି ଗ୍ରଧୂ, ସାଧୁଙ୍କ ଉପରେ ଢାଳନ୍ତୁ । ସିଏ
ଉଠିଲେ ଯ୍ବାଙ୍କ ସହିତ କଥା ବାର୍ତ୍ତା !

ଏଜେଣ୍ଟ—ମାଫ୍ କରନ୍ତୁ ସାର୍—ତାଙ୍କୁ ଆଉ ଉଠେଇବା
ଦରକାର ନାହିଁ—ମୁଁ ଯାଉଚି । (ଚୁଲିଗଲା)

ଗୋବ—(ବଡ଼ ପାଟିରେ )ଗରମ ପାଣି ଢାଳିଲ ବଜ୍ରୁ ?

ଗ୍ରଧୂ—(ଉଠିଆସି ) ମରିଗିଲୁ ବାବୁ—ଗରମ ପାଣି ଢାଳନ୍ତୁ
ନାହିଁ । ଭାଇନା, ଆରେ ଉଠ—ଗରମ ପାଣି ତଳା
ହେଲଣି !

ସାଧୁ—ଏଁ ! ଏ'କ ଅନ୍ୟାୟ କଥା ! ଜୀଅନ୍ତା ମଣିଷ ଉପରେ
ଗରମ ପାଣି ପୁଣି କିଏ ଢାଳେ !

ଗ୍ରଧୂ—ଆରେ, ତମେ ଅଟେ ଉଠ ।

ଗୋବ—ଗ୍ରଧୂ !

ଗ୍ରଧୂ—ଆଜ୍ଞା !

ଗୋବ—ସାଧୁ ଉଠିଲଣି ?

ସାଧୁ—ଉଠିଲେଣି ଆଜ୍ଞା !

ଗୋବ—ଦୁହେଁ ଏଠିକି ଆସ ।

(ଗ୍ରଧୂ, ସାଧୁ ଓ କୁନ୍ତଳା ଆସିଲେ)

କୁନ୍ତ—ଏ କି ଅସମ୍ଭବ କଥା ! ଏତେ ଡାକ୍ତା ଢକଟରେ ନିଦ ଭାଙ୍ଗୁ
ନଥିଲା—ଏ ଗରମ ପାଣି ନାଁ ଶୁଣି ନିଦ ଭାଙ୍ଗିଗଲା
କେମିତି ? ଏ ରହସ୍ୟ ତ ମୁଁ କିଛି ବୁଝି ପାରୁନଲେ ମା !

ଗୋବ—ମୁଁ ସବୁ ବୁଝେଇ ଦଉଚି, ରୁହ···ତମେ ଦୁହେଁ ଔଷଧ
ଖାଇଥିଲ ?

ଗ୍ରଧୂ—ଖାଇଥିଲୁ ଆଜ୍ଞା !

ଗୋବ—ନିଦ ହେଉଥିଲା ?

ସାଧୁ—ନିଦ ! କେଜାଣି ଆଜ୍ଞା !

କୁନ୍ତ—ଏ କି କଥା କହୁଚ ପୁଙ୍ଖାଗ୍ର ? ତୁମକୁ ନିଦହେଉ ଥିଲା କି ନାହିଁ ତୁମେ ଜାଣିନ ?

ସାଧୁ—ଔଷଧ ଖାଇଲେ ନିଦହେବ—ଏଇ ଭରସାରେ ଶୋଇ ପଡ଼ିଲି ଆଜ୍ଞା !

ଗୋବ—ସତ ଅନିଦ୍ରା ତ ହେଉଥିଲ—ଶୋଇଥାନ୍ତ ! ଔଷଧ ଖାଉଥିଲ କାହିଁକି ?

ସାଧୁ—ଗାଢ଼ ନିଦ ହବ ବୋଲି—

ଗୋବ—ଗାଢ଼ ନିଦ ହେଲା ?

ସାଧୁ—ମୂଳରୁ ନିଦ ହେଲା ନାହିଁ ଆଜ୍ଞା । ଔଷଧଟା ଖାଇଥିଲି ବୋଲି ମନ ଖାଲି ଛକ ପକ ହେଉଥାଏ । ଟଙ୍କାଏ କରି ଯେତେବେଳେ ଖରଚ କରିଚୁ—ସେମିତ ପେଖନା କରି ଘାଲେଇ ପଡ଼ୁଥାଉ ।

କୁନ୍ତ—ଔଷଧ ବାଜି ତାହେଲେ ଠକଚ ?

ଗୋବ—ଏଥିରେ ଆଉ ସନ୍ଦେହ ଅଛି !

ସାଧୁ—ଏଇନେ କଅଣ କରିବୁ ଆଜ୍ଞା ?

ଗୋବ—ତୁ ଯା ମସଲା ବାଟ—ସାଧୁ ଚୁଲି ଲଗାଉ । ମାଂସ ରନ୍ଧାହବ ।

ସାଧୁ—ଆଉ ଘଡ଼ିଏ ଗଡ଼ ମଡ ହେଉଥାନ୍ତୁ ଆଜ୍ଞା—

ଗୋବ—ଖୁବ୍ ଗଡ଼ ମଡ ହେଉଚ । ଏଣିକି ଟିକଏ ଦେହହାତ ଝାଡ଼ ଯେତେଇ ଘରକୁ ଯାଅ । ବୁଝିଲ ?

---

# ଏ ଚିତ୍ରରେ ଅଛନ୍ତି —

ଗୋବର୍ଦ୍ଧନବାବୁ — ଗୃହସ୍ୱାମୀ

କୁନ୍ତଳା — ତାଙ୍କ ସ୍ତ୍ରୀ

ଇତି — ତାଙ୍କ ଝିଅ

ବିଜୁ — ତାଙ୍କ ପୁଅ

ସାଧୁ — ତାଙ୍କ ପୁଷ୍ୟାଶ୍ର

ଘଧୁ — ତାଙ୍କ ଭୃତ୍ୟ

ଓ

ଜଣେ ପୋଲିସ୍ କର୍ମଚାରୀ ।

# ସପ୍ତମ ଚିତ୍ର

## ପ୍ରଥମ ଦୃଶ୍ୟ

[କଟକ ବାହାରେ ଏକ ସାଧାରଣ ରେଲ-ଷ୍ଟେସନର ଅପେକ୍ଷା-ଗୃହ।
କାର୍ଯ୍ୟ ଉପଲକ୍ଷେ ଗୋବର୍ଦ୍ଧନବାବୁ ସପରିବାର କଣ୍ଟୁହନ ପାଇଁ
କଟକ ବାହାରକୁ ଯାଇଥିଲେ । ଆଜି ଫେରୁଚନ୍ତି ।
ଗୋବର୍ଦ୍ଧନବାବୁ ଖଣ୍ଡିଏ ଖବର କାଗଜ ଉପରେ
ଆଖି ବୁଲଉଚନ୍ତି । ଟ୍ରେନ ଆସିବାକୁ ଡେରି
ହଉଥିବାରୁ କୁନ୍ତଳାଦେବୀଙ୍କ ମୁହଁ
ଦୁଃଶ୍ଚିନ୍ତାରେ ଭାରାକ୍ରାନ୍ତ ।
ବାଜ ଓ ଇଛ
ନିର୍ଲିପ୍ତ ।
ସମୟ୍ତ ରାତିର ପ୍ରଥମ ପ୍ରହର ।
ଦୂରରୁ ଗୋଟିଏ ଟ୍ରେନ ଆସିବାର ଶବ୍ଦ ଶୁଭିଲା ।]

କୁନ୍ତ—(ପଠନରତ ସ୍ୱାମୀଙ୍କୁ ଉଦ୍ଦେଶ୍ୟ କରି) ଶୁଭୁଚି ?
ଗୋବ—(ଖବର କାଗଜରୁ ଆଖି ନ ଉଠାଇ) ଉଁ—
କୁନ୍ତ—ଏଇଠା କୋଉ ଗାଡ଼ି ଆସିଲା କି ?
ଗୋବ—(କଟାକ୍ଷରେ ମୁହୂର୍ତ୍ତକ ପାଇଁ କୁନ୍ତଳାଙ୍କୁ ଚାହିଁ ପୁଣି
ଖବର କାଗଜ ପଢ଼ାରେ ମନ ଦେଲେ)
କୁନ୍ତ—ମଲା ! ପଚାରୁଚି ପରା—ଏଇଠା କୋଉ ଗାଡ଼ି ଆସିଲା ?
ଗୋବ—(ବିରକ୍ତ ହୋଇ) ରେଲ ଗାଡ଼ି ।
କୁନ୍ତ—ଏ ଦୁନିଆର ଉତମ ଗୋଟିଏ ମଣିଷ, ବାହା
ସାହା ହୋଇ, ପିଲା ଛୁଆ ନେଇ ଘର-ସଂସାର କରି

ରହିଚ, ନା ଆଜ କେହି ଅଛନ୍ତି ? ସର୍କାରୀ କାମ ବାହାନାରେ ସବୁଦିନେ ତମେ ଏକା ଏକା ଚଉଦ ଭୁବନ ବୁଲୁଚ । ପିଲାଛୁଆଙ୍କୁ ଧରି ଦିନେ ପଦାକୁ ବାହାରିଲ ଯେ, ମଣିଷକୁ ଟିକେ ରଖେଇ ଦଉନ ?

ଗୋବ—କିଏ କାହାକୁ ରଖେଇ ଦେଉ ନ ଦଉନ ?

କୁନ୍ତ—ଗାଡ଼ି ଆସିବା ଶବ୍ଦ ଶୁଭିଲା ବୋଲି ମୁଁ ପଚାରିଲି—କୋଉ ଗାଡ଼ି ଆସିଲା ? ଆଉ ତମେ ତନି ବର୍ଷିଆ ଛୁଆକୁ ବୋଧ ଦେଲା ଢଙ୍ଗରେ ମତେ ଉତ୍ତର ଦଉଚ କ'ଣ ନା— ରେଲଗାଡ଼ି !! ରେଲ ପାହିଆ ଉପରେ ରେଲଗାଡ଼ି ନ ଆସି କ'ଣ ଗୋରୁଗାଡ଼ି ଆସନ୍ତା କି ?

ଗୋବ—ଏ ଷ୍ଟେସନକୁ ଆସିଲା ବେଲଠୁଁ ଖାସ୍ ତମରି ଜ୍ୱାଳାରେ ଷ୍ଟେସନ ମାଷ୍ଟରଠୁଁ ଆରମ୍ଭ କରି ପ୍ଲାଟଫର୍ମର ପାଣି ପାଣ୍ଡେ ପର୍ଯ୍ୟନ୍ତ ସମସ୍ତଙ୍କୁ ସାତ ସାତ ଥର ପଚାରି ବୁଝିଲିଣି ଯେ ଆମ ଗାଡ଼ି ପ୍ରାୟ ଘଣ୍ଟାଏ ଲେଟ୍ ଅଛି—ଆଉ ଏ ଭିତରେ କଟକ ଅଡ଼ୁ ଗୋଟାଏ ପାସେଞ୍ଜର ଗାଡ଼ି ଏଠି ପାସ୍କରି ଯିବ। ଏ କଥା ଜାଣିନ ତମେ ?

କୁନ୍ତ—ଜାଣିଲେ କ'ଣ ହେଲା ?

ଗୋବ—ଦେଖୁଚ ତ ଖବର କାଗଜଟା ଉପରେ ଟିକିଏ ଆଖି ବୁଲଉଚ, ପୁଣି ସେଇ କଥାକୁ ଏମିତ ନଠେଇ ହେଇ ପଚାରିବା ମାନେ ?

କୁନ୍ତ—ସେଇଆ କୁହ—ଖବର କାଗଜ ଉପରୁ ଆଖି ଉଠେଇବ ନାହିଁ । କାଗଜ ଖଣ୍ଡେ ହାତରେ ପଡ଼ିଲେ ପରା ତମେ ତ୍ରିଭୁବନ ଭୁଲିଯିବ ।

ଗୋବ—ତମ ତ୍ରିଭୁବନର ଇତିହାସ ଆଉ ଚଉଦ ଭୁବନର ମହିମା! ବର୍ଣ୍ଣନା ତମେ ଏତିକିରେ ବନ୍ଦ କଲ । ଏଇ ସେ ଭଦ୍ର ମହିଳାଙ୍କୁ ସେଠି ଚାହଁ—ତମ ଆଡ଼କୁ ଅନାଇ କେମିତି ମୁରୁକି ମୁରୁକି ହସୁଛନ୍ତି ।

କୁନ୍ତ—କାଇଁକି ?

ଗୋବ—ତମ କଥା ତାଙ୍କ କାନରେ ବାଜୁ ନ ଥିଲେ ବି ତମ ହାବ୍ ଭାବ୍‌ରୁ ସେ ଠିକ୍ ବୁଝି ପାରୁଛନ୍ତି ଯେ, ତମେ କ୍ରମାଗତ ପାଞ୍ଚ ଘଣ୍ଟା କଥା କହି, ମାତ୍ର ପାଞ୍ଚ ସେକେଣ୍ଡ ବନ୍ଦ ହୋଇ ଗଲା ପରେ, ତମ ପଞ୍ଚଭୂତ ଆତ୍ମା ପୁଣି କଥାର ଢେଉ ଛୁଟେଇ ଦବା ପାଇଁ କେମିତି ଚିତ୍କାର କରି ଉଠେ !!

କୁନ୍ତ—ମୋଟ କଥା ତମ ଖବର କାଗଜ ପଢ଼ାରେ ଗୋଳମାଳ ହବ ନାଇଁ—ଏତେ କଥାରୁ ମିଳିବ କ'ଣ ?

ଗୋବ—ତମରି କଥା ହେଲା । ଏବେ ମୁଁ ନିର୍ବିଘ୍ନରେ ବସି ଖବର କାଗଜ ପଢ଼ିପାରେ ?

କୁନ୍ତ—ହଁ, ହଁ, ପଢ଼ । ମୁଁ ମୋର ତୁନି ହୋଇ ବସୁଚି । (କୁନ୍ତଳା ମୁହଁ ବୁଲେଇ ବସିଲେ । ଅନ୍ତରାଳରେ ବସିଥିବା ଉକ୍ତ ଭଦ୍ର ମହିଳାଙ୍କ ଆଡ଼କୁ ଥରେ ଅଧେ ଦୃଷ୍ଟିପାତ କରି ପୁଣି ଗୋବର୍ଦ୍ଧନଙ୍କ ଆଡ଼କୁ ମୁହଁ ଫେରାଇଲେ)

କୁନ୍ତ—ହେଇତ......

ଗୋବ—ଗାଡ଼ି ଆସିବା ପୂର୍ବରୁ ସଙ୍କେତ—ଘଣ୍ଟା ପରି ତମର ଏ ହେଇତ' ଟି ତମ ଅଜୁହା କଥା ସ୍ରୋତର ସଙ୍କେତ ଧ୍ୱନି ନୁହେଁ ତ ?

କୁନ୍ତ—ସେ ଭଦ୍ର ମହିଳାଙ୍କ କଥା ତୁମେ କହୁଥିଲ ନା ?

ଗୋବ—ଏବେ ବି ସେ ତମ ଆଡ଼କୁ ଚାହିଁ ମନେ ମନେ ଆନନ୍ଦ ଅନୁଭବ କରୁଚନ୍ତି କୁନ୍ତଳା ! ତୁମେ ନ ହେଲ ଏଣିକି ଟିକେ ମୁହଁ ବୁଲେଇ ବସ ।

କୁନ୍ତ—ତମ ଆଖିରେ କେବଳ ସେ ଭଦ୍ର ମହିଳାଟି ପଡ଼ିଲେ ! ତାଙ୍କ ପାଖରେ ଯୋଉ ଭଦ୍ର ଲୋକ ଜଣକ ବସିଛନ୍ତି— ତାଙ୍କୁ ଚାହଁତ--ଘଣ୍ଟାଏ ହେଲା କେମିତି ହାତ ହଲେଇ ମଥା ଝୁଙ୍କେଇ ଅନର୍ଗଳ କଥା କହି ଚାଲିଚନ୍ତି ।

ଗୋବ—ତମେ କହିବାକୁ ଚାହଁ ଯେ ମୁଁ ତାଙ୍କର ପରି ତମକୁ ସାମ୍ନାରେ ବସେଇ ସେମିତି ଅଙ୍ଗ ଭଙ୍ଗୀ କରି କଥା ଶୁଣେଇବ ?

କୁନ୍ତ—ତମେତ କଥା କହିଲେ ତମ ପାଟିରୁ ତେଲ ଛୁଟିବ ତମ କଥା ପୁଣି ଶୁଣିବ କିଏ ?

ଗୋବ—ସେ ତେଲ ଯେ ତମକୁ ଖୁବ୍ ମିଠା ଲାଗିବ —ଏ କଥା ମୁଁ ଜାଣେ । ହେଲେ ସେ ଭଦ୍ର ଲୋକ ଓ ଭଦ୍ରମହିଳାଙ୍କ ସମ୍ପର୍କ କ'ଣ ତୁମେ କହି ପାରିବ ?

କୁନ୍ତ—ମଜା ! ସିଏ ସ୍ୱାମୀ—ଇଏ ସ୍ତ୍ରୀ ।

ଗୋବ—ନା । ସେ ସ୍ୱାମୀ ସ୍ତ୍ରୀ ନୁହନ୍ତି ।

କୁନ୍ତ—ତମେ କେମିତି ଜାଣିଲ ? ତମେ ଚିହ୍ନିଚ ତାଙ୍କୁ ?

ଗୋବ—ନା । ମୁଁ ଚିହ୍ନିନି । ତେବେ ଏତେବଡ଼ ଗୋଟାଏ ଟେଷ୍ଟସନ ଓଏଟିଙ୍ଗ୍ ରୁମ୍‌ରେ ଯିଏ ଜଣେ ଭଦ୍ରମହିଳାଙ୍କୁ ଏମିତି ଘଣ୍ଟା ଘଣ୍ଟା ଧରି କଥା ଶୁଣାଇ ପାରନ୍ତି, ସିଏ ଗତ ଜନ୍ମରେ ହୁଏତ ତାଙ୍କର ସ୍ୱାମୀ ଥିଲେ, କମ୍ବା ପର ଜନ୍ମରେ ତାଙ୍କର ସ୍ୱାମୀ ହେବାର କଳ୍ପନା କରି ପାରନ୍ତି ! କିନ୍ତୁ ଇହ ଜନ୍ମରେ ସେ କେବେହେଲେ ତାଙ୍କର ସ୍ୱାମୀ

ହୋଇ ନ ପାରନ୍ତି । ତମର ସନ୍ଦେହ ହେଲେ, ତମେ ଯାଇ ପଗ୍ରିର ବୁଝି ଆସିପାର ।

କୁନ୍ତଳା—ମୋର ଭେକ ସନ୍ଧାନାହିଁ—ମୁଁ ଏଇସ୍ନା କରିବାକୁ ଯାଉଥିଲି ! (ବଡ଼ ପାଟିରେ) ବଜ୍ରୁ—ଇନ୍ତୁ କୁଆଡ଼େ ଗଲ ?

ବଜ୍ରୁ—ଆମେ ଏଇ ବେଞ୍ଚରେ ବସିଚୁ ବୋଉ ଠିକ୍ ଛୋ' ପଛରେ ।

କୁନ୍ତ—ଗାଡ଼ି ଆସୁଚ—ହୁସିଆର୍ ରେ ବସିଥା ।

ବଜ୍ରୁ—ଏଇଟା କି ଗାଡ଼ି କହିଲ ଅଯା ?

ଇନ୍ତୁ—ପାସେଞ୍ଜର ! ଏଯାଉ୍ ଗାଡ଼ିରେ ଆମେ ଏଥର କଟକରୁ ଆସିଥିଲୁ । (ଘଣ୍ଟା ବାଜିଲା ଗାଡ଼ି ଆସି ପ୍ଲାଟ ଫର୍ମରେ ଠିଆ ହେଲା । ଷ୍ଟେସନ ଗୋଳମାଳ ଭେଳ ଉଠିଲା )

କୁନ୍ତ—ଓଃ ! କି ଭିଡ଼ ଏ ଷ୍ଟେସନରେ । ଯୁଆଡ଼େ ଦେଖିବ ଖାଲି ମେଲା ମେଲା ଲୋକ--ହୋ ହୋ ପାଟି !

ଗୋବ—ଆଗେ ତମେ ତମ ପାଟି ବନ୍ଦ କର ।

କୁନ୍ତ—ତମ ପାଖରେ ବସିଲେ ପାଟି ଫିଟାଇବାର ଯୁ'ଥିବ ଯେ ପାଟି ବନ୍ଦ କରିବା ଯାଏ କଥା ଯିବ ! (ବଡ଼ ପାଟିରେ) ଆରେ ବଜ୍ରୁ--ଇନ୍ତୁ କୁଆଡ଼େ ଗଲ ?

ଗୋବ—ଓହୋ—ଦେଖୁଚ ତ ସେ ଦୁହେଁ ଏଇ ବେଞ୍ଚରେ ବସିଚନ୍ତି—ଏମିତ ଚିକ୍ରାର କରୁଚ କାହିଁକି ? ଚୁପ ହୋଇ ବସ । ( କିଛି ସମୟ ସମସ୍ତେ ନୀରବରେ ବସିଲେ । ବାହାରେ ଗାଡ଼ି ଛାଡ଼ିଲା )

କୁନ୍ତ—ଏଇ ଗାଡ଼ି ଛାଡ଼ିଲା ପରି ?

ଗୋବ—"ପରି" ନୁହେଁ । ଗାଡ଼ି ଠିକ୍ ଛାଡ଼ିଲା ।

କୁନ୍ତ—(ମନକୁ ମନ କହିଲା ପରି ) ଏ ଗାଡ଼ି ଛାଡ଼ିଲା--

ଗୋବ—ଆମ ଗାଡ଼ି କେତେବେଳେ ଆସିବ ସେ କଥା ପୁଣି ଯାଇ ବୁଝି ଆସିବ ?

କୁନ୍ତ—ତମକୁ କିଏ କହୁଚି ହୋ ! ଗୋଟାଏ ଜାଗାରେ ବସି ବସି ମଣିଷର ଅଣ୍ଟା ପିଠି ଲାଗିଗଲାଣି । ଆମେ ଆସୁଚୁ ବୋଲି ଏ ନାଆଁ ଲଗା ଗାଡ଼ି ଆଜି ଘଣ୍ଟାଏ ଲେଟ୍ ହେଉଚି ।

ଗୋବ—ବୁଝିଲି କୁନ୍ତଳା--ଆମ ଗାଡ଼ି ଘଣ୍ଟାଏ ପରେ ନ ଆସି ଯଦି କାଲି ଏତିକିବେଳେ ଆସେ, ତେବେ ତମ ପାଖରେ ଆସି କେହି କ୍ଷମାଭିକ୍ଷା ଗୃହିଁବେ ନାହିଁ । କିନ୍ତୁ ଗାଡ଼ିଟା ଡେରିରେ ଆସୁଚି ବୋଲି ତମେ ଯଦି ସେଥିରେ ନାଆଁ ଲଗାଇ ଦବ, ତେବେ ତମକୁ କ୍ଷମା କରିବା ଲୋକ ଏ ଦୁନିଆରେ ବୋଧହୁଏ କେହି ନାହାନ୍ତି ।

କୁନ୍ତ--ନ ଥାନ୍ତୁ । ମୋ, ଦୁଃଖ ମୁଁ ବୁଝୁଚି ନା ଆଉ କିଏ ମୋ ପାଇଁ ବୁଝୁଚି ? ତମେ ସିନା ତମର ଗୋଡ଼ ଉପରେ ଗୋଡ଼ ଟେକେଇ ବସି ଖବର କାଗଜକୁ ଅମୃତ ପିଇ ଯାଉଚ ଯେ ତମକୁ କିଛି ବାଧୁ ନାହିଁ ।

ଗୋବ--ଆମେ ଅଜା କଟକରେ ପହଞ୍ଚୁ ପହଞ୍ଚୁ ରାତି ଦଶରୁ କମ୍ ହବ ନାହିଁ ।

କୁନ୍ତ—ଦଶଟା ବାଜିବ ! ଏତେ ରାତିରେ ଝୁଅ ଦ'ଟାକୁ ନେଇ ଯିବା କେମିତି ?

ଗୋବ—କଟକ ସହରରେ ରାତି ଦଶଟାବେଳେ ଯିବାକୁ ତମକୁ ଭୟ ଲଗୁଛି ?

କୁନ୍ତ—ମୋ' କଥା ପଡ଼ୁଚି ? କଟକ ସହରର ଯୋଉ ଅବସ୍ଥା-ସେଥିରେ ଏତେ ରାତିରେ ଝୁଅଙ୍କୁ ନେଇ ଯିବା ! ପୁଣି

ଏ ବଜ୍ର ଯେମିତକା ଚଗଲ ଟୋକା ! ଆଜ କାଗଜରେ କଣ୍ଠ ଲେଖିନ ?

ଗୋବ—ଓ, ତମେ ପେନ—ପେ୍ରସ କଥା କହୁଚ ? କାଗଜରେ ତ ଅନେକ କଥା ବାହାରେ—ତନ କଲମ ଭର୍ତ୍ତି । ହେଲେ କୋଉଟା ସତ, କୋଉଟା ମିଛ—ଜାଣିବାର ଉପାୟ କ'ଣ ?

[ଦୂରରେ ଗୋଲମାଲ ଶୁଭିଲା]

କୁନ୍ତ—ଏଁ ! ଏକ ଗୋଲମାଲ ? ପାଟିତୁଣ୍ଡ ହଉଚ କାହିଁକ ?

ଗୋବ—ରହ, ମୁଁ ବୁଝିଆସେ । (ପ୍ରସ୍ଥାନ)

କୁନ୍ତ—ଆରେ ବଜ୍ର, ଇତ, କାହିଁଗଲ ?

ଇତ – କ'ଣ ବୋଉ ?

କୁନ୍ତ—ଏଠିକି ପଳେଇ ଆସ—ମୋ ସାମ୍‌ନାକୁ ।

ବଜ୍ର—କାହିଁକ ବୋଉ ? କ'ଣ ହେଲା ?

କୁନ୍ତ – ସେ ପାଖରେ କ'ଣ ଗଣ୍ଡଗୋଳ ଲଗିଚି ।

ଇତ—ବାବା କାହାନ୍ତି ?

କୁନ୍ତ—ବାପା ବୁଝିବାକୁ ଯାଇଚନ୍ତି—ତମେ ଦହେଁ ଆଉ କୁଆଡ଼େ ଯାଅନା—ଏଇଠି ବସ, ମୋ' ପାଖରେ ।

ବଜ୍ର—ମୁଁ ଯିବ ବୋଉ ?

କୁନ୍ତ—କୁଆଡ଼େ ?

ବଜ୍ର – ବାପାଙ୍କ ପାଖକୁ – ଯାଇ ବୁଝି ଆସିବ କ'ଣ ହେଉଚ ? ଏଲ ଷ୍ଟେସନ ହତା ସେ ପାଖରେ ତ – (ବଜ୍ର ଚୂଲ ଯାଉଥିଲା)

କୁନ୍ତ – ହେ ବଜ୍ର, କଥା କହୁ କହୁ ଯାଇ ସେଠି ହେଲୁଣି ! ଏଠିକ ଆ' କହୁଚ । (ବଜ୍ର ଫେରି ଆସିଲା)

ବଜ୍ରୁ—ଯିବ ନାଇଁ ?
କୁନ୍ତ—ନା, ଏଇଠି ବସ, ମୋ' ପାଖରେ ।
ଇନ୍ଦ୍ର—କ' ଗଣ୍ଡଗୋଳ ହେଉଚ ବୋଉ ?
ବଜ୍ରୁ—କାହାର ଗୁଡ଼ କଟି ଯାଇଥିବ ମ !
ଇନ୍ଦ୍ର—ହୁଁ ! ଭୁଷ୍ ପଣ୍ଡିତ !! ଏଇଟା କଟକ ସହର ନୁହେଁ ଯେ ଗୁଡ଼ କଟିଗଲେ ଏମିତ ବାଡ଼ଅ ଡିଟା ହେବେ, ପୁଣି ଏ ସନ୍ଧ୍ୟାବେଳଟାରେ !
ବଜ୍ରୁ—ଆଜ୍ଞ ତେବେ କ'ଣ ହେଉଚ ?
କୁନ୍ତ—ଅଟର ବାପାତ ଯାଇଚନ୍ତି—ବଳେ ବୁଝି ଆସିବେ—ତେମେ ଦହେଁ ବସ । ଈଷତ୍ କ୍ଷୀଣ ସ୍ୱରରେ) ହେ ମହାପ୍ରଭୁ—ମା' କାଳୀ ।
ଇନ୍ଦ୍ର—(ଡରିଯାଇ) କ'ଣ ହେଉଚ ବୋଉ ?
କୁନ୍ତ—ଅଳେ କାଇଁ, କ'ଣ ହେଉଚ ?
ବଜ୍ରୁ—ତୁ ଠାକୁରଙ୍କୁ ଡାକଲୁ କାହିଁକ ?
କୁନ୍ତ—ଓଃ, ତେମେ ଦହେଁ ଚୁପ୍ ଚୁପ୍ ହେଇ ବସିବଟି । (ମନକୁ ମନ) ଇଏ ଏବେ ଏତେବେଳଯାଏ କୁଆଡ଼େ ଗଲେ ?
ବଜ୍ରୁ—ମୁଁ ବୁଝିଲିଣିମ ଅପା, ଯାହା ହେଇଥବ ।
ଇନ୍ଦ୍ର—କ'ଣ ?
ବଜ୍ରୁ—ଷଣ୍ଢଲଢେଇ କ ମେଣ୍ଢା ଲଢ଼େଇ ।
ଇନ୍ଦ୍ର—ଏଇଟା ଆଖିରେ ଖାଲି କଟକ ସହର କଥା ନାଚୁଚ ।
ବଜ୍ରୁ—ନ ହେଲେ ପିଲା ଗ୍ରେପ୍ତ !
କୁନ୍ତ—ଓହୋ—କାଇଁକ ସେ ଅମଙ୍ଗଳଆ କଥାଗୁଡ଼ା ମୁହଁରେ ଧରୁଚୁ ରେ ? ତୁ ଆଇଲୁ ଏଠିକି—ଆ—ବସ ।

ମୋ' ପାଖରେ । (ଟିକଏ ରହି) ଯାଙ୍କ ବୁଦ୍ଧିକୁ ଦେଖ ସେଠିକି ବେଳୁ ଯାଇ ସିଆଡ଼େ ଅଛନ୍ତି ।

[ବଜୁ ଓ ଇଛକୁ କୋଳରେ ଆଉଜାଇ ଧରି କୁନ୍ତଳା ବସି ରହିଲେ । ବାହାରେ ଗୋଳମାଳ ସେମିତି ଶୁଭୁଥାଏ]

କୁନ୍ତ — ଯା'ଙ୍କର କ'ଣ ବୁଦ୍ଧି ବୃଦ୍ଧି ସବୁ ଲୋପ ପାଇଲାଣି ! ପିଲା ଦି'ଟାକୁ ଏଠି ଛାଡ଼ି ଦେଇ ପଦାରେ ହେଲା ଯାଇ ସେଠି ବସିଚନ୍ତି —

ବଜୁ — ମୁଁ ତ କହୁଚି ବୋଉ, ମତେ ଛାଡ଼ି ଦେ — ମୁଁ ଯାଇ ବାପାଙ୍କୁ ଡାକି ଆଣିବି ।

ଇଛା — ଏଇ ପରା, ବାପା ଆସିଲେଣି । (ଗୋବର୍ଦ୍ଧନ ଆସିଲେ)

କୁନ୍ତ — ଏତେବେଳଯାଏ କଣ କରୁଥିଲ ?

ଗୋବ — ସେଠି ତ ଜନ ଗହଳି'ଶ ଲୋକ ଜମା ହେଇଚନ୍ତି । କିଏ କ'ଣ କହୁଚି ଜାଣିବାର ଉପାୟ ନାହିଁ । ମୁଁ ଆଉ କ'ଣ କରନ୍ତି ?

କୁନ୍ତ — କଣ ହେଇଚି ସେଠି, କଣ ବୁଝିଲ ?

ଗୋବ — ଛାଡ଼, ସେ ସବୁ ବାଜେ କଥା ।

କୁନ୍ତ — ବାଜେ କଥା କ'ଣ ମ ? କଣ ତ ପୁଣି ଗୋଟାଏ ହେଇଚି ।

ଗୋବ — ପ୍ରକୃତରେ କ'ଣ ହେଇଚି କିଛି ବୁଝିବାର ଉପାୟ ନାହିଁ

କୁନ୍ତ — କଥାଟା କ'ଣ କୁହ ।

ଗୋବ — କଥା ହଉଚି — ପିଲା ଟ୍ରେସି । ଗୋଟାଏ ରିକ୍ସା ବାଲାକୁ ଧରି ଥାନାକୁ ନେଲେଣି ।

ବଜୁ — ଦେଖ୍ ଅପା — ମୋ କଥା ଠିକ୍ ।

କୁନ୍ତ—ମୁଁ ଯିବ କୁଆଡ଼େ ଲୋ ମା—ସେ ଘୋଡ଼ା ମୁହାଁ ଗୁରୁଙ୍କ ସବୁଆଡ଼େ ଏ ନାଁ ଲଗେଇଲେଣି···!!···କଟକ ସହରରେ ତ ଆଉ ରଖେଇ ଦଉ ନ ଥିବେ। ଆରେ ବିଜୁ, ଇତ କୁଆଡ଼େ ଗଲ ?

ଇନ୍ଦ୍ର—ଆମେ ସବୁ ଏଇଠି ଅଛୁ ବୋଉ।

କୁନ୍ତ—ମଲତ ପୁଣି ତେମେ ଖବର କାଗଜଟା ଧରି ବସିଗଲଣି !

ଗୋବି—କି ଆଶ୍ଚର୍ଯ୍ୟ କଥା ଷ୍ଟେସନ ଓଏଟିଂ ରୁମ ଭିତରେ ତମେ ଅଛ। ମୁଁ ଅଛି। ଏଠୁ ତମ ପିଲାଟାକୁ କିଏ ଚୋରେଇ ନବ ?

କୁନ୍ତ—ଏ ନିଆଁ ଲଗା ଗାଡ଼ିଟା ଏତକ ବେଳକୁ କାଳ ହେଲା ! ରାତି ଦଶଟାରେ କଟକ ସହରରେ ପହଞ୍ଚି କୋଉ ରିକ୍‌ସାରେ ଯିବ—କ'ଣ କରିବ—ଏଇଥି ପାଇଁ ସବୁ ମୁଁ ଘରୁ ଗୋଡ଼ କାଢ଼ି କୁଆଡ଼େ ଯାଏ ନାହିଁ।

ଗୋବି—ହିଆସ୍ତ ବାହାଘର ହବ ବୋଲିତ ବାପ ଘରକୁ ଯିବା ପାଇଁ ଦ'ମାସ ହେଲା ଗୋଡ଼ ଟେକି ବସିଥିଲ। ନିମନ୍ତ୍ରଣ ନ ହେଇଥିଲେ ବି ବୋଧହୁଏ ବଳେ ବଳେ ଯାଇ ହାଜର ହେଇଥାନ୍ତ। ଅଉ କିଏ ଜୋର କରି ତମ ଗୋଡ଼ କଢ଼େଇ ନେଇଥିଲା ବୋଲି କହୁଚ ?

କୁନ୍ତ—ମଲା, ନିଜ ଭାଇର ଝିଅଟା ବାହା ହଉଥିଲା—ମୁଁ ଗଲି ବୋଲି ଦୋଷ ହେଲା ?

ଗୋବି—ଦୋଷ ତମକୁ କିଏ ଦଉଚି କହିଲ ?

କୁନ୍ତ—ତମ ଭଳିଆ ଲୋକ ସାଥିରେ ଥିଲେ ନା, ମଣିଷ ନାକ କାଟି ନାକ ହାତରେ ନବା ଦଶା ହେବିବ। ଏଣେ ଗାଡ଼ି ଡେରି—ତେଣେ ଏ ଚୋର ମଣ୍ଡାଙ୍କ ପାଇଁ ଛାତି ଦକ ଦକ—

ଗୋବ—ତମ ପାଖରେ ମଣିଷ ଏକାନ୍ତ ଅସହାୟ ହୋଇ ପଡ଼ିବା ଛଡ଼ା ଅନ୍ୟ ଉପାୟ ନାହିଁ ଦେଖୁଛି । ଗାଡ଼ି ଡେରି ହେଲା—ଛୁଆ ଚେରି ହେଲେ—ଏଥିପାଇଁ ମୁଁ ଦାୟୀ ? ମୁଁ ଖବର କାଗଜ ନ ପଢ଼ି ତମ ସାଥିରେ ଅନର୍ଗଳ ଗପୁଥିଲେ ଏ ଦୁର୍ଘଟଣା ବସ୍ତୁ ଘଟି ନ ଥାନ୍ତା ?

କୁନ୍ତ—ଘଟିଲେ ·ତ ଗୁଡ଼ା ଏମିତି ଦକ୍ ଦକ୍ ହନ୍ତା ନାହିଁ । ମଣିଷ ତ ମଣିଷକୁ ସାହାଯ୍ୟ ଦିଏ ।...ତେଣେ ସାଧୁଟା କ'ଣ କରୁଛି କେଜାଣି—

ଗୋବ—ସାଧୁ କଥା ପୁଣି ଉଠିଲା କାହିଁକି ? ତାକୁ ତ ଚାରିଦିନ ଅଗରୁ ଚିଠି ଦିଆ ହୋଇଛି ଯେ ଆମେ ଆଜି ଯାଇ ପହଞ୍ଚିବୁ—ଘର ଦ୍ୱାର ସବୁ ସଫା ସଫି କରି ରଖିଥିବ ।

କୁନ୍ତ—ସେଇଟା ଯେମିତି ହାଉଡ଼ା ମଣିଷ—କ'ଣ କରିଥିବ କେଜାଣି ? ଆମେ ତ ରାତି ଦଶଟାରେ ଯାଇ ପହଞ୍ଚିବୁ । ସେପେଇ ବାସ କରିଥିବ କି ନାହିଁ !! ରାଧୁଟା ହେଲେ ଥାନ୍ତା—ସିଏ ତ ତା' ଘରକୁ ଯାଇଛି ।

ଗୋବ—ସାଧୁ ପାଖକୁ ବି ଚିଠି ଲେଖିଛି—ସେ ଆଜି ଆସିଥିବ । ନ ହେଲେ କାଲି ଆସି ପହଞ୍ଚିବ । ତମେ ଆଗେ କଟକରେ ପହଞ୍ଚ—

କୁନ୍ତ—ସେଇ କଟକ ପହଞ୍ଚିବା କଥା ତ ପଡ଼ିଛି । (ଟିକିଏ ରହି) ଆଚ୍ଛା, ସେ ରିକ୍ସା ବାଲା ଯେ ଟିଣଟାକୁ ନେଉଥିଲା—

ଗୋବ—ମୂଲକୁ ନବା କଥାର ପ୍ରମାଣ ଏ ପର୍ଯ୍ୟନ୍ତ ମିଳିନି ।

କୁନ୍ତ—ଧର ଯଦି ନେଇ ଥା'ନ୍ତା—କ'ଣ କରି ଥା'ନ୍ତା ? ନେଇ ଯାଇ କୁଆଡ଼େ ନାକ କାନ କାଟି ଦଉଚନ୍ତି ।

ଗୋବ—ଅସମ୍ଭବ ନୁହେଁ ।

କୁନ୍ତ – କି ନୃଶଂସ କଥା ଲୋ ମା !! ଆରେ ବିଜୁ – ଇତି –
ଗୋବି – ବିଜୁ ହେଇ ତମ କୋଳରେ – ଇତି ତମ ପିଠିକୁ ଆଉଜି ଠିଆ ହେଇଛି । ଆଉ ମତେ ଚାହିଁ – ଖବର କାଗଜ ଏଠି ଗୁପ୍ତା ଦେଇ ସତର୍କ ପ୍ରହରୀ ପରି ଗାଡ଼ି ଆସିବା ଯାଏ ତମକୁ ଜଗି ରହିଲି । ହେଲା ତ ଏବେ ?
କୁନ୍ତ—(ହସିପକାଇ) ହଁ, ହେଲା ।
(ଗାଡ଼ି ଆସିବାର ଘଣ୍ଟି ଶୁଭିଲା । ଦୂରରେ ଟ୍ରେନ୍ ଶବ୍ଦ)
ଗୋବି—ଉଠ କୁନ୍ତଳା, ଗାଡ଼ି ଆସିଲା—ବିଜୁ ଶୋଇପଡ଼ିଲା ନା କ'ଣ ! ହେ ବିଜୁ ଉଠ୍ । ଇତି, ସେ ସାନ ବ୍ୟାଗ୍‌ଟା ତୁ ଧର । ଆରେ କୁଆଡ଼େ ସବୁ ଗଲ, ଜିନିଷ ଉଠାଅ—ସେକେଣ୍ଡ କ୍ଲାସ୍ ଡବା···
କୁନ୍ତ—ଏମିତି ଡବାରେ ବସିବା, ଯୋଉଥିରେ ବେଶୀ ଲୋକ ନ ଥିବେ କି କମ୍ ଲୋକ ନ ଥିବେ ।
ଗୋବି—ହଉ ତୁମେ ଆସ ।
[ ଜିନିଷ ପତ୍ର ସହ ସମସ୍ତେ ପ୍ଲାଟଫର୍ମକୁ ଗଲେ ]

---

# ଦ୍ୱିତୀୟ ଦୃଶ୍ୟ

[ମଫସଲ ଅଞ୍ଚଳରୁ କଟକ ଯାଇଥିବା ଏକ ରାସ୍ତା ପାର୍ଶ୍ୱର
ବସ୍ ଷ୍ଟାଣ୍ଡ । ସମୟ-ରାତ୍ରି ପ୍ରାୟ ଆଠଟା ।
ବସ୍ ଅପେକ୍ଷାରେ ରାଧୁ ବସି ରହିଛି ।
ପାଖରେ ଗୋଟିଏ ଲଣ୍ଠନ ।...
ଦୃଶ୍ୟ ଆରମ୍ଭ ହେବାର ଅଳ୍ପ
ସମୟ ପରେ ସାଧୁ ଧଇଁ
ସଇଁ ହୋଇ ସେଠି
ଆସି ପହଞ୍ଚିଲା]

ସାଧୁ—କିରେ ରାଧୁ, ତୁ ଏଠି ? ତୁ କଣ କଟକ ଯିବୁ ?

(ସାଧୁକୁ ଏତେବେଳେ ଏଠି ଦେଖି ରାଧୁର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ )

ରାଧୁ—ହିଁ' ମୁଁ କଟକ ଯିବି । ମଟର ଅପେକ୍ଷାରେ ଏଠି ବସିଛି । ହେଲେ ଭାଇନା, ତମେ..... ..

ସାଧୁ—ମୁଁ ବି କଟକ ଯିବି । ଭଲ ହେଲା ଏକା—ଦିହେଁ ସାଙ୍ଗ ହୋଇ ଯିବା । ମଟର ଆମକୁ ଠିକ୍ ମିଳିବଟି ରାଧୁ ?

ରାଧୁ—ହଁ ମିଳିବ । ହରିପୁରରୁ ଲଷ୍ଟ ଗାଡ଼ି ଏ ଯାଏଁ ଆସିନି । ଏଇ ଘଣ୍ଟାକ ଭିତରେ ଆସିଯିବ ।...ହେଲେ ଭାଇନା—

ସାଧୁ—ଏ ଗାଡ଼ି ପାଇ ନ ଥିଲେ ମୁଁ ଗାଡ଼ି ଫେଲ୍ ହୋଇ ଥାନ୍ତି, ନା ?

ରାଧୁ—ହଁ, ଫେଲ୍ ହୋଇ ଥା'ନ୍ତ । ଏଇ ଗୋଟାକ ଗାଡ଼ି ଦେଲେ ହରିପୁରରୁ ଆଜି ଆଉ କଟକ ଗାଡ଼ି ନାହିଁ ।

ସାଧୁ—ଓହୋ, ଯୋଉ ଦଉଡ଼ା ମୁଁ ଦଉଡ଼ୁଚି !

ରାଧୁ—କାହିଁକି ?

ସାଧୁ—ଏ ଗାଡ଼ି ପାଇବାକୁ । ତୁମେ ଜାଣ, ଆମ ଘର ପାଖରୁ ମଟର ରାସ୍ତା ଦି' କୋଶ ବାଟ । ମୁଁ ପୂରା ଦଉଡ଼ୁଚି ।

ରାଧୁ—ତେବେ ତମ ଘରକୁ ଆସିଲ କେମିତି ଭାଇନା ? ବାବୁ ଦିନ ତମକୁ ଘର ଜଗାଇ ଦେଇ ଯାଇଥିଲେ, ତମେ କଟକରେ ଥିଲ ?

ସାଧୁ—ହଁ, ବାବୁଙ୍କ ଘର ଜଗିଥିଲି ଯେ, ଦି' ଦିନ ହେଲା ଟିକଏ ଗାଁକୁ ଚାଲି ଆସିଥିଲି ।

ରାଧୁ—ବାବୁ ଜାଣିଚନ୍ତି ?

ସାଧୁ—ନାହିଁ ବାବୁତ ଯାଇ ତାଙ୍କ ଶ୍ୱଶୁର ଘରେ, ସେ ଜାଣିବେ କେମିତି ?

ରାଧୁ—ଘର କାହା ଜିମାରେ ଛାଡ଼ି ଆସିଚ ?

ସାଧୁ—ବାବୁଙ୍କର ସେଇ ଯୋଉ ଦଗ ଚିଇସା—ଯୋଗକୁ ସେଇ ଆସି ପହଞ୍ଚି ଗଲେ—ତାଙ୍କୁ ଘରେ ରଖେଇ ଦେଇ ମୁଁ ଦି' ଦିନ ପାଇଁ ଟିକେ ଗାଁକୁ ଚାଲି ଆସିଲି ।

ରାଧୁ—କାହିଁକି ?

ସାଧୁ—ଏଇ ଦାଢ଼ୀ ! ଏଇ ଦାଢ଼ୀ କଥା ମୁଁ ତୋତେ କହୁ ନ ଥିଲି ?

ରାଧୁ—ହଁ, କହୁଥିଲତ । ମାନସିକ କରି ଦାଢ଼ୀ ରଖିଥିଲ ନରା ?

ସାଧୁ—ହଁ, ପାଞ୍ଚବର୍ଷ ପୂରିଗଲା—ନାଗେଶ୍ୱର ମହାଦେବଙ୍କ ପାଖରେ ଦାଢ଼ୀ ପକେଇବି ବୋଲି ଆସିଥିଲି ।

ରାଧୁ—କାହିଁ ? ମୁହଁରେ ତ ହେଇ ଦାଢ଼ୀ ଗୋଞ୍ଜିକ ସେମିତି ଅଛି—ପକେଇ ନ' ଲ !

ସାଧୁ—ସେଇ କଥା ପରା—ମୋର ଅସିବା ବୃଥା ହୋଇ ଗଲା ।
ଆମ ଲଗୁଆ ବାରିକ ମଣେ ହାଇରାଣରେ ପକେଇ ଦେଲା !
କ'ଣ ଆଉ କରିବ ! ସେମିତ ଫେରି ଯାଉଚ । ଘରଦ୍ୱରେ ରୁକଣୀ !

ରାଧୁ—ରୁକଣୀ ମାନ୍ ତମେ ଆଉ ରଖିଲ କୋଉଠି ଭାଇନା !
ବାବୁ ଏତେ ବେଳକୁ ଅସି କଟକରେ ପହଞ୍ଚି ଯାଇଥିବେଣ,
ହାଇରାଣ ହଉଥିବେ ।

ସାଧୁ—ବାପୁଡ଼ାଏ କରେ—ବାବୁ ପରା କାଲି ଅସିବେ ।

ରାଧୁ—କାଲି ଅସିବେ ? କିଏ କହିଲା କାଲି ଅସିବେ ?

ସାଧୁ—ମୋ ପାଖକୁ କଟକରୁ ଚିଠି ଦେଇଥିଲେ ।

ରାଧୁ—କ'ଣ ଲେଖିଥିଲେ ?

ସାଧୁ—ଲେଖିଥିଲେ ଉଣେଇଶ ତାରିଖ ଧନ କଟକରେ ପହଞ୍ଚିବେ ।

ରାଧୁ—ଅଜିପରା ଉଣେଶ ତାରିଖ !

ସାଧୁ—କଣ ହେଲା ? ଅଜି ଉଣେଇଶି ? ତୁ ଜାଣିନୁ—ଆଜ
ଅଠର ତାରିଖ ।

ରାଧୁ—ହଁ'ହାଧନ ଘରେ ରହି ତମର ସବୁ ଗୋଲମାଲ ହୋଇ ଗଲଣି ଭାଇନା । ଅଉ ହଁ' ଧନ ରହିଥିଲେ ତମ ଦିନକୁ ରାତ କହିବାକୁ ଘଡ଼ି ନ ଥା'ନ୍ତା ।

ସାଧୁ—ଅଜି ତାହେଲେ ଉଣେଇଶି ?

ରାଧୁ—ହଁ ।

ସାଧୁ—ଅଜ ନୁହଁରେ ରାଧୁ—ସବୁଦିନେ ମୋର ଏଇ ତାରିଖ ଗୋଲ ମାଲ ଦୋଷଟା ରହିଗଲା । କଣ କରିବା କହିଲୁ !
ମୋ ଜମା ଘର—ମୁଁ ଅସି ଏଠି ! ଇଏତ ବଡ଼ ବାଟ

ମାରଣା କାମ ହେଉଗଲ । ବାବୁ ଆସି କଣ ପଢ଼ୁଅଛନ୍ତି ?

ରାଧୁ—କିଏ ଜାଣେ ? ଦିନଗାଡ଼ିରେ ଅସିଚନ୍ତି କି ରାତି ଗାଡ଼ିରେ ଆସୁଚନ୍ତି —

ସାଧୁ—ଯଦି ଅସି ପଢ଼ୁଅଛି ସାରିଥାନ୍ତି ତ ଯାହା ଭାଗ୍ୟରେ ଥିବ ଘଟିବ । ଆଉ ଯଦି ଆସି ନଥାନ୍ତି, ତେବେ ଭଲଟା ପରା, ମୋର ଘରକୁ ଆସିବା କଥା ତାଙ୍କ କାନରେ ପଡ଼ିନଥିବ ନାହିଁ । ବିଗ ପିଁସାଙ୍କୁ ମୁଁ ହାତ, ଓଠ ଧରି କହି ଆସିଚି ।

ରାଧୁ—ହଉ ତେମେ ଆଗ ଚାଲ—କଟକରେ ପହଞ୍ଚି, ତେଣିକି ଦେଖିବା ଯାହାହେବ ।

ସାଧୁ—ନେ ରାଧୁ ଏ ଫୁଲଟି ନେ । (କାନରୁ ଫିଟାଇ ଫୁଲଟିଏ ରାଧୁକୁ ଦେଲା)

ରାଧୁ—କି ଫୁଲ ଇଏ ?

ସାଧୁ—ନାଗେଶ୍ୱର ମହାପ୍ରଭୁଙ୍କ ଚଢ଼ାଫୁଲ । ଏଇଟି ରହିଲା, ମା'ଙ୍କୁ ଦେବି । ଏଇଠାରେ ରାଧୁ, ଅଲିଅ ହସିଲାଣି । ମଟର ଅସିଲା ।

[ ଦୁହେଁ ପ୍ରସ୍ତୁତ ହୋଇ ରହିଲେ ]

---

# ତୃତୀୟ ଦୃଶ୍ୟ

[ଚଳନ୍ତା ଟ୍ରେନ୍‌ର ଗୋଟିଏ ଦ୍ୱିତୀୟ ଶ୍ରେଣୀ ଡବା । ଅନ୍ୟ
କେତେ ଜଣ ଯାତ୍ରୀଙ୍କ ସହିତ ଗୋବର୍ଦ୍ଧନ ବାବୁଙ୍କ
ପରିବାର ସେହି ଡବାରେ ଯାତ୍ରା କରୁଛନ୍ତି ।
ବିଜୁ, ଇତି ଘୁମେଇ ପଡ଼ିଲେଣି]

କୁନ୍ତଳା—ରାତି କେତେ ହେଲଣି ?

ଗୋବ—ସାଢ଼େ ନ'ଟା ।

କୁନ୍ତଳା—ଦଶଟା ଅଗରୁ ତା'ହେଲେ କଟକରେ ପହଞ୍ଚି ପାରିବାନି ?

ଗୋବ—ସାଢ଼େ ଦଶ ଏପାଖରୁ ନୁହେଁ ।

କୁନ୍ତଳା—ବିଜୁ, ଇତି ହେଇ ଘୁମେଇ ପଡ଼ିଲେଣି ।

ଗୋବ—ତାଙ୍କୁ ସେଠି ଶୁଆଇ ପକାଅ ।

[କୁନ୍ତଳା, ବିଜୁ ଓ ଇତିକୁ ଶୁଆଇ ପକେଇଲେ]

କୁନ୍ତ—ସାଧୁକୁ ଷ୍ଟେସନକୁ ଆସିବାକୁ ଲେଖିଛ ?

ଗୋବ—କାହିଁକି ? ସେ ଆସି କଣ କରିବ ?

କୁନ୍ତ—ଗାଡ଼ି—ରିକ୍ସା ଡକା ଡକି କରନ୍ତା ।

ଗୋବ—ଏତିକ କାମ କଣ ମୋ ଦ୍ୱାରା ହେଇ ପାରିବ ନାହିଁ ?

କୁନ୍ତ—ହବ ନାହିଁ କାହିଁକି ? ରାତି ଏତେ ହେଲଣି—

ଗୋବ—ସେ ଦାୟିତ୍ୱ ମୋର । ଘରେ ପହଞ୍ଚିଲା ବେଳକୁ ବରଂ ଦେଖିବ—ସାଧୁ ସେପଟେଇ ବାସ କରି ଚୁହିଁ ବସିଛି । ଖାଇ ପିଇ ନିଶ୍ଚିନ୍ତରେ ଶୋଇବ ।

(କିଛି ସମୟ ପାଇଁ ଦୁହେଁ ନୀରବ । ତା ପରେ କୁନ୍ତଳା
ଡବାର ଅନ୍ୟ ପ୍ରାନ୍ତରେ କାହାକୁ ଯେପରି
ଦେଖି ଚମକି ଉଠିଲେ)

କୁନ୍ତ—(ଟିକିଏ ନମ୍ର ସ୍ୱରରେ) କହୁଛି—

ଗୋବ – ପୁଣି କ'ଣ ହେଲା ?

କୁନ୍ତ – ଏ ଗାଡ଼ି ସେ ମୂର୍ତ୍ତିକୁ ଗ୍ରହଣ କଲା – ସେ ଧ'ନ୍ୟ !!

ଗୋବ—ସେଇ ଭଦ୍ର ମହିଳା, ଆଉ ସେ ଭଦ୍ରଲୋକ ଜଣକଙ୍କ ! ଯାହାଙ୍କୁ ଆମେ Waiting Room ରେ ଦେଖି ଥିଲେ ?

କୁନ୍ତ—ହଁ, ସେ ଦୁହେଁ କଣ ଏଇ ଗାଡ଼ିରେ ଯାଉଛନ୍ତି ?

ଗୋବ—ହଁ, ଯାଉଛନ୍ତି ତ । ତମେ କଣ ଏଠି ବେଳଯାଏ ଦେଖି ନ ଥିଲ ?

କୁନ୍ତ—ଦେଖିଥିଲି । ହେଲେ ତେଣିକି ମୁହଁ ବୁଲେଇ ବସିଥିଲେ —ଚିହ୍ନି ପାରି ନ ଥିଲି । ହେଇ, ଦେଖିଲି—

ଗୋବ—କ'ଣ ?

କୁନ୍ତ—ସେ ଲୋକଟା ହାତରେ ସିଏ କ'ଣ ? ଫୁଲଟାଏ ନା ?

ଗୋବ—ହଁ, ଫୁଲ—ବୋଧହୁଏ ଗୋଲାପ ଫୁଲ ।

କୁନ୍ତ— ହାତରେ ଫୁଲଟାଏ ଧରି ସେ ଏଇ ଗାଡ଼ିରେ ଯାଉଛି ? (କୁନ୍ତଳା ଏକାବେଳକେ ଭୟ ପାଇ ଗଲେଣି)

ଗୋବ—ଗଲେ ଦୋଷ କଣ ? ଅଜ କାଲିତ ହାତରେ ବୋମା ଧରି ଲୋକେ ଯିବା ଆସିବା କଲେଣି—ସିଏ ଫୁଲଟାଏ ଧରିଲେ ଦୋଷ କ'ଣ ? ରେଲ ଯାତ୍ରୀମାନେ ହାତରେ ଫୁଲଧରି ଯିବାଟାତ ରେଲ ଆଇନରେ ଦୋଷାବହ ନୁହେଁ ।

କୁନ୍ତ—କଣ ତମେ ବୁଝୁଛ ? ସେଠି ପରି ଲୋକେ କୁହାକୁହି ହଉଥିଲେ, ଯେ କଣ ଗୋଟାଏ ଫୁଲ ଶୁଙ୍ଘେଇ ଦେଇ ପିଲାଙ୍କୁ ଭୁଲେଇ ନଉଛନ୍ତି ।

ଗୋବ—ହଁ ! ଫୁଲଟାକୁ ଦେଖି ତୁମେ ଏତେ ଦୂର ଆଗେଇ ଗଲଣି ?

କୁନ୍ତ—ଲୋକଟା ପ୍ରତି ମୋର କାହିଁକି ଘୃଣା ସନ୍ଦେହ ହେଉଛି ।

ଗୋବ—ସମସ୍ତଙ୍କୁ ସନ୍ଦେହ କରିବା ଯୋଗାଏ ଦିଗରୁ ଅବଶ୍ୟ ଖୁବ୍ ଭଲ କାମ । କିନ୍ତୁ କୁନ୍ତଳା, ସେ ଭଦ୍ରଲୋକ ଯଦି ଫୁଲଟି ସାହାଯ୍ୟରେ କାହାକୁ ଭୁଲେଇବାକୁ ଚାହୁଥାନ୍ତେ—ତେବେ ସେ ଲୋକ ଭିନ୍ନ—ତାର କାରଣ ମଧ୍ୟ ଭିନ୍ନ । ଏତେ ସୁନ୍ଦର ରାତିରେ, ଏତେ ସୁନ୍ଦର ଫୁଲ ହାତରେ ଧରି ତମ ପିଲାଙ୍କ ପାଖ ସୁଦ୍ଧା ସେ ମାଡ଼ିବେ ନାହିଁ । ଏଇ ଦେଖ, ଫୁଲଟି ତାଙ୍କ ହାତରୁ ଯାଇ ଭଦ୍ରମହିଳାଙ୍କ ଖୋସାରେ ସ୍ଥାନ ପାଇଲାଣି ।

କୁନ୍ତ—କିଏ ଜାଣିଛି ଏବେ—ସେ ଦି'ଜଣ ଯାକ ହୁଏତ ଏକାମ କରୁଥିବେ !!

ଗୋବ—ତୁମେ ବିଶ୍ୱାସ କର କୁନ୍ତଳା—ସେ ଦୁହେଁ ଏ ସବୁର ବହୁ ଦୂରରେ । ଦୁହେଁ ବର୍ତ୍ତମାନ ଏକ ମହାତୀର୍ଥର ଯାତ୍ରୀ । ତମେ ନିଶ୍ଚିନ୍ତ ମନରେ ବସ ।

(କଥା ଶେଷ କରି ଗୋବର୍ଦ୍ଧନବାବୁ ଦେହକୁ ଆଉଜା ବସିଲେ)

କୁନ୍ତ—ତମକୁ ନିଦ ଧରିଲାଣି କି ?

ଗୋବ—ଯାହା ପଥରେ ତମପରି ଲୋକ ପାଖରେ ଥିଲେ ସ୍ୱୟଂ କୁମ୍ଭକର୍ଣ୍ଣବି ତା'ନିଦ କଥା ଭୁଲିଯିବ ! ମୁଁ କୋଉ ଛାର ! ମତେ ଆଗାମୀ ତିନିଦିନ ଯାଏ ନିଦ ହେବାର ଆଶା ନାହିଁ । ଅତଏବ ତମର ଆଶଙ୍କାର ମଧ୍ୟ କୌଣସି କାରଣ ନାହିଁ । ଗାଡ଼ି ବେଶ୍ ମଧୁର ଛନ୍ଦରେ ଟୁଲି ଟୁଲି ଚାଲିଛି । ଇଚ୍ଛା ହେଉଛି ପିଲାଙ୍କ ମଝିରେ ତମେ ଟିକିଏ ଗଡ଼ି ପଡ଼ ।

---

# ଚତୁର୍ଥ ଦୃଶ୍ୟ

(କଟକ ଷ୍ଟେସନ ସମ୍ମୁଖସ୍ଥ ରାସ୍ତା । ଟ୍ରେନରୁ ଓହ୍ଲାଇ ଗୋବର୍ଦ୍ଧନ ବାବୁ ତାଙ୍କ ପରିବାର ସହ ଆସିଲେ । ସମୟ—ରାତି ପ୍ରାୟ ଦଶଟା)

ଗୋବ—ସବୁ ଜିନିଷପତ୍ର ଠିକ୍ ଉତାରି ହୋଇଛି ତ ?

କୁନ୍ତ—ହଁ ।

ଗୋବ—(ଅନ୍ତରାଳରେ ଥିବା କୁଲିମାନଙ୍କୁ) ଜିନିଷପତ୍ର ସବୁ ସେଇଠି ରଖ ।

କୁନ୍ତ—ରିଙ୍କୁ, କୁଆଡେ଼ ଗଲୁ ? ମୋ' ହାତ ଧ' ।

ରିଙ୍କୁ—ମୁଁ ବାପାଙ୍କ ହାତ ଧରିଛି ।

କୁନ୍ତ—ଇତି, ତୁ ମୋ ହାତ ଧ' ।

ଇତି—ମୁଁ ପରା ଏଇ ବ୍ୟାଗଟା ଧରିଛି—ତୋ ହାତ ଧରିବି କେମିତି ?

କୁନ୍ତ—ଗୋଟାଏ ହାତରେ ବ୍ୟାଗ୍ ଧରି ଆର ହାତରେ ମୋ ହାତ ଧ' ।

ଗୋବ—ଓହୋ ! ଏ କଟକ ଷ୍ଟେସନକୁ ଆସି ଏମିତି ହାତ ଧରାଧରି ହଉଛ କାହିଁକି ? କ'ଣ ଧବଳେଶ୍ୱର ଯାତ୍ରା ଦେଖି ଯାଉଛ ?

କୁନ୍ତ—(ଈଷତ୍ ନିମ୍ନସ୍ୱରରେ) ହେଇଟି, ଦେଖୁଛ ?

ଗୋବ—କଣ ?

କୁନ୍ତ—ଦେଖସ ତେଣେ ।

ଗୋବ—(ବିରକ୍ତ ହୋଇ) ଆରେ କଣ ଦେଖିବ ?

କୁନ୍ତ—ଏମିତ ଚାହିଁ କରୁଚ କାହିଁକି ?···ସେଇ ଯୋଉ ଦକଣ—ଟେ୍ରନରୁ ଓହ୍ଲେଇ, ହେଇ ଆମ ପଛେ ପଛେ ଆସୁଚନ୍ତି। ସେ ସ୍ତ୍ରୀଲୋକଟା ହାତରେ ଫୁଲ।

ଗୋବ—ମନ ହଉଚ, ସେ ଫୁଲଟା ଛାଡ଼ୁ ଆଣି ଜବରଦସ୍ତି ତମ ନାକରେ ମାଡ଼ ଦେଇନ୍ତି ଫଳ କଣ ହଉଚ !!

କୁନ୍ତ—ହଉ ହଉ। ସେତକ ଥାଉ। ତମ ଦୁନିଆରେ ତମେ ରୁହ।···ଯାଙ୍କ ଆଖିରେ ଦୁନିଆଟା ଯାକ ଦେବତା !

ଗୋବ—ଜନିଷ ପତ୍ର ସବୁ ଏଠି ରହୁଲା। ତମେ ସବୁ ଏଇଠି ଠିଆ ହୁଅ। ମୁଁ ଗାଡ଼ିଟାଏ ଦେଖେଁ।

କୁନ୍ତ—ଘୋଡ଼ା ଗାଡ଼ିଟାଏ ଅଣିବ।

ଗୋବ—ହଁ, ଘୋଡ଼ା ଗାଡ଼ିତ ଦେଖୁଚ।

କୁନ୍ତ—ଆମେ ସବୁ ଏଇଠି ଠିଆ ହୋଇଥିବୁ--ଏକା ?

ଗୋବ—କୁନ୍ତଳା !। ତମେ ବାରବର୍ଷ ହେଲା ଏ ସହରରେ ରହୁଲଣି !

କୁନ୍ତ—ବାରବର୍ଷ ହେଲା ଏ କଥା କେବେ ଶୁଣି ନ ଥିଲା। ବଳୁ, ତୁ ପୁଣି କୁଆଡ଼େ ଯାଉଚୁ ?

ବଳୁ—ମୁଁ ବାପାଙ୍କ ସାଙ୍ଗରେ ଅଛୁ।

ଗୋବ—କାହିଁ, ଘୋଡ଼ାଗାଡ଼ିତ ଗୋଟାଏ କୋଉଠି ଦେଖାନାହିଁ।

କୁନ୍ତ—ଗୋଟାଏ ବ ନାହିଁ ?

ଗୋବ—ନା, ଖାଲି ରିକ୍ସା।

କୁନ୍ତ—ମୁଁ ଜାଣେ ପରା—ଏତେ ସହରରେ ଗାଡ଼ିଘୋଡ଼ା କିଛି ମିଳିବ ନାହିଁ।

ଗୋବ—ବୁଦ୍ଧ, ମୁଁ ରିକ୍ସା ଦ'ଟା ଡାକେ । ଦ'ଟା ରିକ୍ସା ହେଲେ ଚଳିଯିବ ।

କୁନ୍ତ—ସେ ଅଚହ୍ନା--ଅଜଣା ରିକ୍ସା ବାଳଙ୍କୁ ଡାକ ନାହିଁ । ଆମ ସାଇର ସେ ଅଜୁ କ ସମ୍ଭୁ କୋଉଠି ଥିବେ, ଦେଖ ।

ଗୋବ—ହଉ ମୁଁ ଦେଖୁଚି ।

(ଗୋବର୍ଦ୍ଧନ ଯିବାକୁ ବାହାରିଲେ । ବଜୁ ତାଙ୍କ ସାଥିରେ ଥାଏ )

ଇତି—ଏଇ ଦୋଉ, ବଜୁ ପୁଣି ବାପାଙ୍କ ସାଥିରେ ଯିବାକୁ ବାହାରିଲାଣି ।

କୁନ୍ତ—ବଜୁ !

ଗୋବ—ସେ ଆସୁ ମୋ ସାଥିରେ ।

(ଗୋବର୍ଦ୍ଧନଙ୍କ ସାଥିରେ ବଜୁ ଗଲା)

କୁନ୍ତ—ସାଧୁଟା ଷ୍ଟେସନ୍‌କୁ ଆସିଥିଲେ କେତେ ସୁବିଧା ହୋଇଥାନ୍ତା । ଆ' ଇତି, ଜିନିଷ ପାଖକୁ ଆ' ।

(ଦୁହେଁ ଅନ୍ତରାଳକୁ ଗଲେ । କିଛି ସମୟ ପରେ ବାସ୍‌ରୁ ଓହ୍ଲାଇ ସାଧୁ ଓ ସାଧୁ ଆସିଲେ )

ସାଧୁ—ଏ ମଟରବାଲାଟା ଏଇ ଇଷ୍ଟେସନ୍‌ରେ ଓହ୍ଲାଇ ଦେଲା । ଟାଉନ୍‌କୁ ନେଲା ନାହିଁ । ଆମକୁ ପୁଣି ଚାଲି ଚାଲି ଯିବାକୁ ପଡ଼ିବ ।

ସାଧୁ—କେତେ ବାଟ ଯେ--ଘଡ଼ିକେ ପହଞ୍ଚିଯିବା । ତମ ବେଗ୍‌ଟା ଆଣିଚକି ?

ସାଧୁ—ହଁ । ତୁ ଆଉ ଡେରି କରନା, ଚାଲ, କେମିତି ଟାଉନ ଯାଇ ବସାରେ ପହଞ୍ଚିଲେ ରକ୍ଷା ।

ସାଧୁ—ଏଇ ଦେଖିଲଣି ଘଇନା !
ସାଧୁ—କ'ଣ ?
ସାଧୁ—ସେ ଝୁଣ୍ଟ ପାଖରେ ମା' ଅଉ ଇଢଦେଇ ଠିଆ ହେଇଚନ୍ତି ।
ସାଧୁ—ଏଁ ! ସେମାନେ ତା'ହେଲେ ଅସି ପହଞ୍ଚି ଗଲେଣି । ବାବୁ କାହାନ୍ତି ?
ସାଧୁ—ଏଇଠି କୋଉଠି ଥିବେ । ··· ଆସ ଘଇନା, ମା'ଙ୍କୁ ସାଥିରେ ଦେଖା କରିବା ଆସ ।
ସାଧୁ—ନାଇଁ ନାଇଁ ସାଧୁ । ସେ କଥା ତୁ ମତେ କହନା । ତୁ ଦେଛେ ଯା'--ମୁଁ ଏଣେ ଏକ ମୁହାଁ ହେଇ ବସାକୁ ଯାଉଚି । ସେମାନେ ପହଞ୍ଚିବା ଆଗରୁ ମୁଁ ବସାରେ ପହଞ୍ଚି ଥିବି— ଭାଇଟା ଦଶ--ତାଙ୍କୁ ଏ କଥା କିଛି କହିବୁ ନାଇଁ । ମୁଁ ଯାଉଚି । (ପ୍ରସ୍ଥାନ)
ସାଧୁ—ଆଚ୍ଛା ହାଉନା, ମଣିଷ ଇଏ !
(କୁନ୍ତଳାକୁ ଦେଖା କରିବା ଉଦ୍ଦେଶ୍ୟରେ ସାଧୁ ଟିକିଏ ଆଗେଇ ଗଲା )
ସାଧୁ—ଦଣ୍ଡବତ ମା । (କୁନ୍ତଳା ବାହାର ଆସିଲେ)
କୁନ୍ତ—କିରେ ସାଧୁ ତୁ କୁଆଡ଼ୁ ?
ସାଧୁ—ମୁଁ ଦଶ ଏଇନେ ଗାଁରୁ ଆସିଲି ମା—ଏଇଠି ମଠରୁ ଓହ୍ଲେଇଲି ।
କୁନ୍ତ—ଛୁଟି ପାଇଥିଲୁ ?
ସାଧୁ—ହଁ, କାଲି ଛୁଟି ପାଇ ଆଜି ଛୁଟିଚି । ମଠରୁ ଓହ୍ଲେଇ ଦେଖିଲି—ଆପଣ ଏଠି ଠିଆ ହେଇଚନ୍ତି ।

କୁନ୍ତ—ହଉ, ତୁ ଆସିଲୁ ଭଲ ହେଲା । ମୁଁ ପରା ଯା'ଙ୍କୁ କହୁଥିଲି—ଚିଠି ଦେଇଥିଲେ ସାଧୁ ଷ୍ଟେସନ ଆସିଥାନ୍ତା !

ସଧୁ—ଭାଇନା !!

କୁନ୍ତ—ସେ ପରା ଘର ଜଗିଚି । ତୁ ଛୁଟି ନେଇ ଘରକୁ ଗଲୁ—ସେ ଘର ଜଗି ରହିଲା । କଣ କରିବ ଆଜି କେଜାଣି ? ରୋଷେଇ ବାସ କରିବାକ ନାଇଁ ! ଆମରଥ ଏତେ ଡେରି ହେଲଣି—ଟୁଆଏ ଯାଇ ଖାଇବେ କ'ଣ ?

ସଧୁ—ବାବୁ କାହାନ୍ତି ମା ?

କୁନ୍ତ—ରିକ୍ସା ଡାକି ଯାଇଚନ୍ତି । ବଜୁ ତାଙ୍କ ସାଥିରେ ଯାଇଚି । କ'ଣ କହିବରେ ସଧୁ—ଏ ଯୋଉ ପିଲାଧରା ହୋ ଉଠିଚି ! ବଜୁ, ଇତିଙ୍କି ଦେଖି ଦି'ଜଣ ପରା ଆମ ସାଙ୍ଗେ ସାଙ୍ଗେ ଆସିଥିଲେ । ହାତରେ ପୁଣି ଫୁଲ ଧରିଥାନ୍ତି ।

ସଧୁ—କ'ଣ କହୁଚମା ! ଏତେ ସାହାସ !! ପିଲାଧରି ଧରି ଆସିଚନ୍ତି !!!

କୁନ୍ତ—ହଁ ପରା । ମୋ' ମନ ଖାଲି ଦକ୍ ଦକ୍ ହଉଚି—କେମିତି ଯାଇ ଘରେ ପହଞ୍ଚିବ । ତୁ ଟିକଏ ଯାଇ ଦେଖିବୁଟି—ସେ ରିକ୍ସା ଡାକି ଯାଇଥିଲେ, କୁଆଡ଼େ ଗଲେ ? ବଜୁ ପୁଣି ତାଙ୍କ ସାଥିରେ ଯାଇଚି ।

ସଧୁ—ଯାଉଚି ମା ।

(ସଧୁ ଚାଲିଗଲା । କୁନ୍ତଳା ଅନ୍ତରାଳକୁ ଗଲେ । ପଛଭୂମିରେ ଷ୍ଟେସନ ପ୍ଲାଟଫର୍ମ ତଥା ବାହାର ରାସ୍ତାର ଚିତ୍କାରଚରିତ ଗୋଳ ମାଳ ଶୁଭୁଥାଏ । ଟିକଏ ପରେ ବ୍ୟସ୍ତ ହୋଇ ଗୋବର୍ଦ୍ଧନ ପୁଣି ଆସିଲେ । ସାଙ୍ଗରେ ବଜୁ ଅଛୁ )

ଗୋବ—କାହିଁ ଅଜୁ କାହିଁ ନା ସ୍ମୃ କାହିଁ ? ତାଙ୍କ ରିକ୍ସାବାଲାତ ଜଣେ ଛେଦ୍ନ ଦେଖାଯାଉ ନାହାନ୍ତି । ( ହଠାତ୍ ଅଦୂରରେ କାହାକୁ ଦେଖିପାରି ) ଏ—ଏ ରିକ୍ସା—

( ଡାକ ଡାକ ଗୋବର୍ଦ୍ଧନ ଚାଲିଗଲେ । ସେତେବେଳକୁ ବଜୁର ଦୃଷ୍ଟି ଥିଲା ବିପରୀତ ଦିଗକୁ । ଖୁବ୍ ନିବିଷ୍ଟ ମନରେ ସେ ଯେପରି କଣ ଦେଖୁଥିଲା । ସେ ଏକାକୀ ରହିଗଲା )

ବଜୁ—(ଦୂରକୁ ଲକ୍ଷ୍ୟକରି) ସାଧୁ ଭାଇନା—ହୋ ସାଧୁ ଭାଇନା ଆରେ, ତମେ ଏମିତି ପଳଉଚ କାହିଁକି ? ଶୁଣ । ସାଧୁ ଭାଇନା—ସାଧୁଭାଇନା—

( ଡାକ ଡାକ ବିପରୀତ ଦିଗକୁ ଚାଲିଗଲା । ଠିକ ଏ ପରେ ଗୋବର୍ଦ୍ଧନ ଫେରି ଆସି ଦେଖିଲେ ବଜୁ ସେଠି ନାହିଁ )

ଗୋବ—ଏଁ ! ବଜୁ କୁଆଡ଼େ ଗଲା ! (ଡାକିଲେ) ବଜୁ—ବଜୁ

( ସାଧୁ ଆସି ଗୋବର୍ଦ୍ଧନଙ୍କୁ ପ୍ରଣାମ କଲା । )

ଗୋବ—କିରେ ସାଧୁ, ତୁ କେତେବେଳେ ଆସିଲୁ ?

ସାଧୁ—ଏଇ ଘଡ଼ିଏ ହେଲାତ ଆସିଲି । ମା'ଙ୍କୁ ଦେଖାକରି ଆପଣଙ୍କ ପାଖକୁ ଯାଉଥିଲି ।

ଗୋବ—ବଜୁ କାହିଁଗଲା ?

ସାଧୁ—ସାନବାବୁ ? ସାନବାବୁ ପରା ଆପଣଙ୍କ ସାଙ୍ଗରେ ଥିଲେ ?

ଗୋବ—ଥିଲାତ । କିନ୍ତୁ ଗଲା କୁଆଡ଼େ ? ତୁ ଦେଖିନୁ ?

ସାଧୁ—ନାହିଁତ ଆଜ୍ଞା । ମୁଁ ସେ ପାଖରେ ଆପଣଙ୍କୁ ଖୋଜୁଥିଲି ।

ଗୋବ—ବଡ଼ ମୁସ୍କିଲ । ଏତେ ସହରରେ ପିଲାଟା ଗଲା କୁଆଡ଼େ ?

ରାଧୁ—ସେଇ କଥା ଆଜ୍ଞା । ମା' ଶୁଣିଲେ ଭାରି ବ୍ୟସ୍ତ ହେବେ ।
ଏ ଯୋଉ ପିଲା ଚେମ୍ବ ହୋ' ଲଗିଚି—

ଗୋବ—ପିଲଚେମ୍ବ !! (ଦୂରକୁ ଲକ୍ଷ୍ୟକରି) ସେ ମୋଡ଼ ଉପରେ ସେଠି ଏତେ ଲୋକ ଜମା ହେଉଚନ୍ତି କାହିଁକି ? କଣ ହେଉଚି ।

ରାଧୁ—ସେଇ ପିଲଚେମ୍ବ ଚଗା । ଶହ ଶହ ଲୋକ ଜମା ହେଉଚନ୍ତି । ମୁଁ ଜଣକୁ ପଚାରି ବୁଝିଲି—ଗୋଟାଏ କିଏ ଫୁଲ ଶୁଙ୍ଘେଇ କୁଆଡ଼େ କାହା ପିଲାକୁ ଚେମ୍ବ କରି ନେଇ ଯାଉଚି ।

ଗୋବ—ରାଧୁ, ତୁ ମା'ଙ୍କ ପାଖକୁ ଯା—ମୁଁ ଆସୁଚି ।

(ପ୍ରସ୍ଥାନ)

ରାଧୁ—ଇଏତ ଭାରି ଅଡୁଆ କଥା ହେଲା । ମା'ଙ୍କୁ ମୁଁ ଏବେ ଯାଇ କ ଣ କହିବି

(କୁନ୍ତଳା ଆସିଲେ)

କୁନ୍ତ—କ'ଣ କ'ରେ ରାଧୁ ? କ ଣ ହେଉଚି ? କ'ଣ ପିଲଚେମ୍ବ କଥା କିଏ କହୁଥିଲା ।

ରାଧୁ—ପି—ଲ—ଚେ—ମ୍ବ···

କୁନ୍ତ—ମୋ'କାନକୁ ତ ସେମିତ ଶୁଭିଲା । କାହାପିଲା କିଏ ଚେମ୍ବ କଲାଣି ?

ରାଧୁ—କିଛି କଣ ଜଣା ପଡ଼ୁଚି ମା ! ପଞ୍ଚାଏ ଲୋକ ସେଠି ଜମା ହେଇ ହୋ ହୋ ଧୋ ଧୋ ହଉଚନ୍ତି । ଠିକ୍ କଥା କିଛି ବୁଝା ପଡ଼ୁନା

କୁନ୍ତ—ଇଏ ଏତେବେଳ ଯାଏ ଗଲେ କୁଆଡ଼େ ? ରକ୍ଷା ଦ'ଣ୍ଟା ଠିକ୍ କରି ପାରୁ ନାହାନ୍ତି ! ତୁ ତାଙ୍କୁ ଭେଟି ଥିଲୁଟି ?

ରଘୁ—ହଁ ।

କୁନ୍ତ—କ'ଣ ସେ ଭେଟଣ କରୁଚନ୍ତି ? ବଜୁ କାହିଁଗଲା ?

ରଘୁ—ସାନବାବୁ ଘର ମା......

କୁନ୍ତ—କ'ଣ ହୋଇଚି ?

ରଘୁ—ସାନବାବୁ, ବାବୁଙ୍କ ପାଖରୁ କୁଆଡେ କେତେବେଳେ
ଚାଲି ଯାଇଚନ୍ତି—ବାବୁ ଜାଣି ପାରି ନାହାନ୍ତି ।

କୁନ୍ତ—ଏଁ !! ବଜୁ କୁଆଡ଼େ ଚାଲି ଯାଇଛି !

ରଘୁ—ଆପଣ ବ୍ୟସ୍ତ ହଉଚନ୍ତି କାହିଁକି ? କୁଆଡେ ଯିବେ ସେ ?
ବାବୁ ତାଙ୍କୁ ଏଇ ସାଙ୍ଗେ ସାଙ୍ଗେ ଖୋଜି ଆଣିବେ ।

କୁନ୍ତ—ନାହିଁ ରଘୁ ତୁ ଚାଲ୍ । ମୁଁ ଯିବି । ମୋ ପୁଅ କୁଆଡ଼େ
ଗଲା—

ରଘୁ—ଏଇ ବାବୁ ଆସିଲେଣି । ( ଗୋବର୍ଦ୍ଧନ ଆସିଲେ )

କୁନ୍ତ—ବଜୁ କାହିଁ ?

ଗୋବ—ତମେ ଆସ ମୋ ସାଥିରେ ।

କୁନ୍ତ—ତମେ ଆଗେ କୁହ ବଜୁ କାହିଁ ?

ଗୋବ—ତମେ ଆସ, ମୁଁ କହୁଚି । ମୁଁ ଥାନାକୁ ଫୋନ
କରିଥିଲି—ଥାନା ଅଫିସର୍ ଆମକୁ ଡକାଇଚନ୍ତି । ତମେ୍
ଆସ । ରଘୁ, ଜଲ୍‌ଦି ଜଣେ ରିକସାରେ ଲଦ ତୁ ଆ ।

(ସମସ୍ତଙ୍କର ପ୍ରସ୍ଥାନ)

---

## ଶେଷ ଦୃଶ୍ୟ

[ଜଣେ ସବ୍‌ଇନ୍‌ସପେକ୍‌ଟରଙ୍କ ସହିତ ଗୋବର୍ଦ୍ଧନ, କୁନ୍ତଳା, ଇନ୍ଦୁ ଓ ରଘୁ ଥାନା ଭିତରକୁ ଆସିଲେ ]

ସ:ଇ:—ଥାନା ଆଗରେ ଲୋକ ଭିଡ଼ ଦେଖୁଛନ୍ତିତ ଆଜ୍ଞା ! ଏ ପଛଏଟେ ଭିତରକୁ ଆସିବା ଛଡ଼ା ଉପାୟ ନାହିଁ ।

କୁନ୍ତ—ବଜ୍ର କାହିଁ ?

ସ:ଇ: —ଏଇ, ଏଇଠି ଅଛି । (ପାଖ କୋଠରୀରୁ ବଜ୍ର ଆସିଲ ) ଏଇ ଆପଣଙ୍କ ପୁଅ ତ ?

କୁନ୍ତ—ହଇରେ ବଜ୍ର...

ବଜ୍ର—ମୁଁ ଏଇଠି ଅଛି ବୋଉ । ମୋର କିଛି ହୋଇ ନାହିଁ ।

ଗୋବ—ତୋତେ କିଏ ଧରି ନେଇଥିଲା ?

ବଜ୍ର—ମୁଁ ଜାଣି ନାହିଁତ ବାପା, ମୋତେ କିଏ ଧରି ନେଇଥିଲା !

ଗୋବ—ତୁ ଏଠିକି ଆସିଲୁ କେମିତି ?

ବଜ୍ର—ସେ କଥା ବି ଜାଣିନି । ପଞ୍ଚାଏ ଲୋକ ମତେ ଆଣି ଏଠି ଛାଡ଼ି ଦେଇଗଲେ ।

ଗୋବ—କଥା କ'ଣ ଆଜ୍ଞା ?

ସ:ଇ—ପ୍ରକୃତ କଥା କ'ଣ ମୁଁ ବି ଏ ପର୍ଯ୍ୟନ୍ତ ବୁଝିନାହିଁ । ବୁଝିବାର ଉପାୟ ବି ନାହିଁ । ଥାନା ଆଗରେ ଯୋଉ ଲୋକ ଭିଡ଼ !!

ଗୋବ—ସେ ଲୋକ କାହିଁ ?

ସ:ଇ:—ହାଜତରେ ଅଛି । ତାକୁ ଦେଖି କାଳେ ଉଠିବ ବୋଲି, ବଜ୍ରକୁ ମୁଁ ତା'ପାଖକୁ ନ ନେଇ ଏଇଠି ରଖିଥିଲି । ଏଇ

ଦେଖନ୍ତୁ । (ସ୍ୱାଜଗ ଟାଙ୍କୁ ସମସ୍ତେ ଗଲେ । ସ୍ୱାଜଗ ଭିତରେ ସାଧୁ )

ସଃଇଃ—ଏଇ ଆଜ୍ଞା—ଏଇ ସେଇ ଲୋକ ।

ଗୋବ—କଣ ସାଧୁ ! ତମେ !!

ସାଧୁ—(ଭେ'କରି କାନ୍ଦଉଠି) ମୋ କପାଳ ଆଜ୍ଞା— ମତେ ଏ ଦଶା ଭୋଗଥିଲା । (କାନ୍ଦୁଟାଏ)

ଗୋବ—ତମେ ଘର ଛାଡ଼ି ଇଆଡ଼େ ଆସିଥିଲ କାହିଁକି ?

ସାଧୁ—ମୁଁ କହୁଚି ଆଜ୍ଞା, ଶୁଣନ୍ତୁ । ଭାଇନା ଲୁଚକରି ଷ୍ଟେସନ ପାଇଁ ତାଙ୍କ ପାଖକୁ ଯାଇଥିଲେ । ଆଜି ମୋର ସାଙ୍ଗରେ ମଝିରରେ ଆସିଲେ । ଆପଣମାନଙ୍କୁ ଷ୍ଟେସନରେ ଦେଖି ଲୁଚକରି ଦଉଡ଼ି ବାଟେ ପଳଉଥିଲେ ।

ଗୋବ—ସେଇଠୁ ?

ବଜ—ମୁଁ ତାଙ୍କୁ ଦେଖିଲି । ସାଧୁ ଭାଇନା, ସାଧୁ ଭାଇନା, ଡାକ ଡାକ ତାଙ୍କ ପଛେ ପଛେ ଦଉଡ଼ିଲି । ସେ ଆଗେ ଆଗେ ଦଉଡୁଥାନ୍ତି—ମୁଁ ପଛେ ପଛେ ଦଉଡୁଥାଏ । ଶେଷରେ ସେ ଛକ ପାଖରେ ତାଙ୍କୁ ଧରିଲି ।

ଗୋବ—ସେଇଠୁ ?

ସାଧୁ—ସେଇଠୁ ବଜାବାବୁ ମତେ ଟାଣିଲେ—କହିଲେ, ଷ୍ଟେସନକୁ ବାପାଙ୍କ ପାଖକୁ ଚାଲ । ମୁଁ ତାଙ୍କୁ କହିଲି— ଷ୍ଟେସନ ଯିବାନାହିଁ, ଘରକୁ ଆସ । ଏମିତି ଟଣାଟଣି ହଉ ହଉ ପଚାଂଏ ଲୋକ "ଧିଲ ଚୋର" "ଧିଲ ଚୋର" କହି ମାଡ଼ି ଆସିଲେ । ସେଇଠୁ ସାନବାବୁ କୁଆଡ଼େ ଗଲେ—ମୁଁ ଆଉ ଜାଣି ନାହିଁ । ମୁଁ ଯେତେ କହୁଥାଏ— ସିଏ ଆମ ବାବୁଙ୍କ ପୁଅ—ତାଙ୍କୁ ଡାକ—ମୋ କଥା କେହି

ଶୁଣୁ ନ ଥାନ୍ତି । କହୁଥାନ୍ତି—ମୁଁ ମୁହଁରେ ଦାଢ଼ିରଖିଚ—କାନରେ ଫୁଲ ବାନ୍ଧିଚ—ମୁଁ ଅଲବତ୍ ପିଲ ଚୋର ! ସେଇଠୁ ମତେ ଶୁନେ୍ୟ ଶୂନେ୍ୟ ଟେକି ଆଣି ଏ ଗାରଦରେ ପୁରେଇ ଦେଲେ ।

ସଃଇଃ—ଯୁଆଙ୍କୁ ଆପଣ ଚିହ୍ନନ୍ତି ?

ଗୋବ—ହଁ ଆଜ୍ଞା, ସିଏ ମୋ ପୁତ୍ରାଘ୍ର !

ସଃଇଃ—ପୁତ୍ରାଘ୍ର !! ହଉ, ଆସ ପୁତ୍ରାଘ୍ର, ହାଜତ ଭିତରୁ ବାହାର ଆସ (ହସି ହସି) ମୁହଁରେ ଦାଢ଼ିରଖିଚ—କାନରେ ଫୁଲ ବାନ୍ଧିଚ—ତମେ ଏ ଦଶା ଭୋଗିବ ନାଇଁତ—ଭୋଗିବ କଏ ! ( ସାଧୁ ହାଜତ ଭିତରୁ ବାହାରକୁ ଆସିଲ ) ସଃଇଃ—(ଗୋବର୍ଦ୍ଧନଙ୍କୁ) ଏ କେଶ୍ ତା' ହେଲେ ଆଜ୍ଞା—

ଗୋବ—କିଛି ନୁହେଁ ଆଜ୍ଞା—ଏଥିରେ ଆପଣ ମାନଙ୍କର କିଛି ସମ୍ପର୍କ ନାଇଁ । ଏଇଟା ହଉଚି ଆମର ପୁତ୍ରପୂର ପାରିବାରିକ କେଶ !!

(ସମସ୍ତେ ହସି ଉଠିଲେ)

---

## ଏ ନାଟକରେ ଅଛନ୍ତି—

ଗୋବର୍ଦ୍ଧନବାବୁ—ଗୃହସ୍ୱାମୀ

କୁନ୍ତଳା—ତାଙ୍କ ସ୍ତ୍ରୀ

ବଜୁ—ତାଙ୍କ ପୁଅ

ଇନ୍ଦୁ—ତାଙ୍କ ଝିଅ

ସାଧୁ—ତାଙ୍କ ପୂଜାରୀ

ଗାଧୁ—ତାଙ୍କ ଭୃତ୍ୟ

ଓ

ସଦାଶିବ—ଗୋବର୍ଦ୍ଧନଙ୍କ ଆତ୍ମୀୟ

# ଅଷ୍ଟମ ଚିତ୍ର

## ପ୍ରଥମ ଦୃଶ୍ୟ

[ଗୋବର୍ଦ୍ଧନବାବୁଙ୍କ ଘର । ସମୟ—ଅପରାହ୍ଣ । ବଜାର ସଉଦା ଆଣି ରାଧୁ କୁନ୍ତଳାଙ୍କ ନିକଟରେ ହିସାବ ଦେଉଚି]

କୁନ୍ତ—ଏ କଟକ ସହରରେ ଆଉ ଚଳି ହେବନାହିଁ ଦେଖୁଚି ! ଗୁଆ ସେର ନ' ଟଙ୍କା ! ଜହ୍ନିସେର ପୁଣି ଆଠଣା ! କୋଉ କାଳ ଯୁଗରେ ଏକଥା ଦେଖା ନଥିଲା । ସବୁ ସଉଦା ପୁଣି ଆଣିଚୁ ନା ନାହିଁ ରାଧୁ ?

ରାଧୁ—ହଁ ମା ଆଣିଚି—ସବୁ ଆଣିଚି ।

କୁନ୍ତ—ଖଟାପାଇଁ କଣ ଆଣିଚୁ ? ଖଟା ଟିକିଏ ନହେଲେ ବାବୁଙ୍କ ଉପର ଥାଳି ପାଖରେ ବସିବେ ନାହିଁ ! କଣ ବିଲତି ବାଇଗଣ ପାଇଲୁ ?

ରାଧୁ—ନାହିଁ ମା— ବିଲତି ବାଇଗଣ ସପନରେ ଦେଖିବାକୁ ମିଳୁନାହିଁ । ଆମ୍ବଡ଼ା ଆଣିଚି ।

କୁନ୍ତ—ଆମ୍ବଡ଼ା ଖଟା ପୁଣି ତାଙ୍କ ମନକୁ ପାଉଚି କି ନାହିଁ କେଜାଣି ? ସେର କେତେ ?

ରାଧୁ—ବାରଣା ।

କୁନ୍ତ—ମୁଁ ଯିବି କୁଆଡ଼େ ରେ ରାଧୁ ! ଆମ୍ବଡ଼ା ଗୋଟାଏ ପରିବା-ଟା ସେର ପୁଣି ବାରଣା ! ଗାଁରେ ଆମର ଗଛରେ ଗଛେ

ଅମୃତ୍ତା ହେଇ ସେମିତ ଝଡଯିବ— କେହୁ ପଚୃରିବେ ନାହିଁ । ଏଠି ପୁଣି ସେଇ ବାରଣା !!

ସାଧୁ—ହେଲେ ମିଳୁଚ କୋଉଟି ? ପରିବା ଦୋକାନରେ ପରି ବାଡ଼ଅବାଡ଼ ।

କୁନ୍ତ—କାହିଁକି ?

ସାଧୁ—ଯେତେ ସବୁ ମାଛ ଖିଆ ଲୋକ ସେମାନେତ ମାଛ ଛାଡ଼ି ଦେଲେଣି । କାଇଁ ମାଛ ସେର ତିନ, ଗୁରୁ—ମାଛ ଖାଇବ କିଏ ! ସମସ୍ତେ ପରିବା ଦୋକାନକୁ ମୁହାଁଉଛନ୍ତି । ତମେ ଥରେ ମାର୍କେଟକୁ ଯାଆନ୍ତ କି ମା, ଦେଖନ୍ତୁ—ବାବୁମାନେ ମାଛ ହାଟକୁ ପଶିଯାଇ ଯେମିତ ଶୁଣୁଚନ୍ତି ମାଛ ସେର ଗୁରିଟଙ୍କା—ତୁନିକରି ପରିବା ଦୋକାନକୁ ଖସି ପଡ଼ୁଚନ୍ତି । ଏଣେ ପରିବା ଦୋକାନୀଙ୍କ ଗର୍ଜି ଦେଖେ କିଏ ? ସେଇ ଯୋଉ ବିରିଞ୍ଚ ଭାଇ ଦୋକାନରେ ଠେଳେ ମେ ଗହଣା କଣାକଣି କର—ତା ଗୁରୁକୁ ସାଙ୍ଗରେ ଏଇ ଅମ୍ବୃତ୍ତା ପାଇଁ ମୋର ଅଳ ହାତାହାତି ହେଇ ଯାଇଥାନ୍ତା । ଭଲ ଭଲ ଅମୃତ୍ତା ଦ'ଟା ବାଛି ମୁଁ ଡାଲାରେ ରଖିଚ । ସିଏ ଆସି ସେଇ ଅମ୍ବୃତ୍ତାକୁ ଓଜନ କରେଇଲାଣି ! ମୁଁ କହୁଲାରୁ କହୁଚ—ତେମେତ ମାଛ ମାଂସ ଖିଆଲୋକ—ଅମୃତ୍ତା ଉପରେ କାହିଁକି ଆଖି ପକଉଚ ?…ମୁଁ ବୋଲି ତାକୁ କାଡ଼ି କରି ଅସିଲି ।

କୁନ୍ତ—ଇଏ କଣ ? ବାଇଗଣ ?

ସାଧୁ—ବାଇଗଣ କଥା ଛାଡ଼ ମା ! ଏତେ ଦାମକେ ଟଙ୍କାକରୁ ବାରଣାକୁ ଅସିଲି ।

କୁନ୍ତ—ତୁ ପାନ ଆଣିବାକୁ ନାହିଁ କହୁଥିଲି । ଘଣ୍ଟାଏ ହେଲା ମୁଁ ପାଣି ଖାଲି କରି ବସିଛି ।

ଗ୍ରୀଷ୍ମ—ହଁ ମା, ଏଇ ନିଅ । ହେଲେ ମୋ ଦୋଷ ଦବ ନାହିଁ । ପାନ ବଜାର ଆଜି ଜଳୁଛି । ଏଇ ପାନ କଡ଼ା ଆଠଣା । ଅଧ କଡ଼ାଏ ଆଣିଛି ।

କୁନ୍ତ—ହଇରେ ଇଏ ପାନ ନା ବରକୋଳି ପତର ! ସ୍ତା' କଡ଼ା ପୁଣି ଆଠଣା ?

ଗ୍ରୀଷ୍ମ—ହେଲେ ମିଳୁଛି କେଉଁଠି ? ଚୌଧୁରୀ ବଜାରରୁ ବୃନ୍ଦାବନଚୌକ ସବୁ ଦୋକାନ ଝାଡ଼୍ ଝୁଡ଼୍ ।

କୁନ୍ତ—କରେ ଇଏକଣ ? ଦ' ପୁଡ଼ିଆ ପାନ ଅଣିବୁ । ଏଥିରେ ବାରଟା—ଆଉ ଏଥିରେ···ବାରଟା ! ମୋଟ ଚବିଶଟା । ଅଧକଡ଼ାକୁ ଗୋଟାଏ କମ୍ !

ଗ୍ରୀଷ୍ମ—ଆମରି ମା ଥରକେ ଅଧକଡ଼ାଏ ଲେଖାଁ ପାନ ଅସେ । ଆମ ଲଗୁଆ ଦୋକାନୀକି ମାଗିଲି—ମନାକଲା । କହିଲେ—ଦ' ଅଣାରୁ ବେଶୀ ଦବନାହିଁ । ଦ' ଅଣା ପଇସା ଦେଲି, ବାରଟା ପାନ ଦେଲା । କହେ ଆଉ ଗୋଟାଏ ପାନ ଦେ ! ଦେଲାନାହିଁ । ସିଏ କାହିଁକି ଲୋକସାନ ସହିବ ! ସେମିତି ଆଉ ଗୋଟାଏ ଦୋକାନକୁ ଗଲି—ସିଏ ବି ଦ'ଅଣା ନେଇ ବାରଟା ଦେଲା ।

କୁନ୍ତ—ବାସ୍ ! ପଚିଶିଟା ପାନର ଦାମ୍‌ଦେଇ ଚବିଶିଟା ପାନ ଆଣିଲୁ ?

ଗ୍ରୀଷ୍ମ—ସେଇକଥା କହୁଛି ପରା ମା—ମୋ ଦୋଷ ଦବନାହିଁ । ପାନ ବଜାର ଆଜି ଜଳୁଛି ।

କୁନ୍ତ—କରେ, ଙ୍ଗ୍ରେଜ ସିନା ତେଶ୍ୱଇଥିଲ ଯେ, ପାଣି ଟୋପାଏ ଚୋଉଟି ମିଳୁ ନଥିଲ—ପାନ ବଜାରରୁ ପରବା ବଜାର ଯାଏ ହୁହୁ ଜଳୁଥିଲ। ଏଇନେତ ବର୍ଷା ହେଲଣି।

ସାଧୁ—ବର୍ଷାହେଲେ କଣ ହେଲ ମା ? କଣରେ ପରପାଣି ! ପଲପରିବା ସବୁ ରହିଲ ନାଇଁ ସେମାରରେ—ଅମେ ରହିଲୁ ଏ ଟାଇରେ। ମଝିରେ ଦ'କୂଳ ଖାଇ ନାଇ ବହୁଚ ! ଯାଉଚ କଏ ନା ଅସୁଚ କଏ ? (କୁନ୍ତଳା ପାନ ଭାଙ୍ଗୁଥାନ୍ତି)

କୁନ୍ତ—ସେଇ କଥା ମୁଁ କହୁଚ—ଏ କଟକ ସହରରେ ଆଉ ଚଳିହବ ନାଇଁ। ଦବୁଟି ସେଠୁ ଗୁଣ୍ଡି ବୋତଲଟା ଦବୁଟି, ଏ ଟାନ କଣ ପାଟିକି ପାନ ଭଲ ଲଗୁଚ ? ଯେମିତ ଦାଲ।

ସାଧୁ—ବାବୁକଣ ଅଫିସରୁ ଆସି ନାହାନ୍ତି ମା ?

କୁନ୍ତ—କାଇଁ, ଏତେବେଳ ହେଲଣି—ଦେଖା ନାହାନ୍ତି। ତାଙ୍କର ସେ ନୂଆ ଗୃହକର୍ମକଥା ଅଜ କ'ଣ ଟିକଣା ହବାର ଥିଲ—କଣ' ହେଲ କେଜାଣି। ପୂଝାରି କାଇଁଗଲ—କହ, ଚୁଲି ଲଗାଉ।

ସାଧୁ—ଭାଇନା ହୋ ସାଧୁ ଭାଇନା !...ସନ୍ଧ୍ୟାରେ ବସିଚନ୍ତି ନା କଣ ?

କୁନ୍ତ—ତୁ ଯା'—ପରବା କଟାକଟି କର। ଏ ପିଲ ଦ'ଟାଙ୍କର ଆଜ କଣ ହେଇଚ ? କଣ କରୁଚନ୍ତି ସେ ଘରେ ? କ'ଣ ସୋର୍ ଶବ୍ଦ କିଛି ନାଇଁ ! (ଡାକଲେ) ବଜୁ, ବନ୍ଦୁ ! କରେ କଥା କହୁନୁ କାଇଁକି ? ଇଭ, କଟେଇ ଇଭ ! ମୁଁ ଡାକୁଚ ପରା ! ଇଭ ! (ବଜୁ ଓ ଇଭ ଆସିଲେ। ଦୁହିଁଙ୍କ ହାତରେ ଦୁଇଖଣ୍ଡ କାଗଜ)

କୁନ୍ତ—ଏମିତି ମନଧ୍ୟାନ ଦେଇ ଦ'ଘଣ୍ଟାଯାକ କଣ ଲେଖୁଥିଲ କ'ଣରେ ?

ବଜ୍ରୁ—ବନ୍ଧୁ ତାଲିକା । ଆମ ଦ'ଜଣଙ୍କର ଅଙ୍କ ବନ୍ଧୁ ତାଲିକା ବାହାରିଲା ।

କୁନ୍ତ—ବନ୍ଧୁ ତାଲିକା ପୁଣି ଏମିତି ମନଧ୍ୟାନ ଦେଇ ଲେଖା ହଉଥିଲା ! ମୁଁ କହୁଥିଲି ଅବା ପାଠ ପଢ଼ା ହଉଚି ।

ଇତି—ନିଜେ ଆଜି ପାଠ ପଢ଼ୁନୁ ବୋଲି ତୁ ପାଠପଢ଼ା କଥା ସବୁ ଭୁଲି ଗଲୁଣି ବୋଉ ! ମୂଳରୁ ବନ୍ଧୁ ତାଲିକା ଠିକ୍ ହୋଇ ଲେଖା ନ ହେଲେ, ପାଠପଢ଼ା ପୁଣି ଠିକ୍ ହବ କେମିତି ?

କୁନ୍ତ—ତାଲିକା ତ ଇସ୍କୁଲରୁ ଆଣିଥିବ— ବଜାରରୁ ବହି କିଣା ହବ । ଆଉ ଠିକ୍ ଭୁଲ୍ ଏଥିରେ ରହିଲା କ'ଣ ?

ବଜ୍ରୁ—ତୁ' ନ ଜାଣୁ ଅପା, ବୋଉ ଏ ସବୁ କଥା କିଛି ବୁଝି ପାରେ ନାହିଁ—...

କୁନ୍ତ—ମୋ' ଗୁଣବନ୍ତ ପୁଅଟା କ'ଣ ମତେ ଟିକେ ବୁଝେଇ ଦେଲୁ, ମୁଁ ବୁଝେଁ ।

ବଜ୍ରୁ—ଇସ୍କୁଲରୁ ରଫ୍ ଖାତାରେ ତାଲିକା ଟିପି ଆଣିଥିଲୁ । ଏଠି ଏ ପକ୍କା ତାଲିକା ତିଆରି ହେଲା । ବାପା ଆସିଲେ ତାଙ୍କୁ ଦିଆଯିବ । ନାହିଁଲେ ଅପା ?

ଇତି—ହଁ ।

କୁନ୍ତ—ହଁ ! କ'ଣ 'ହଁ' ମତେ ବୁଝେଇଲୁ । କାଗଜ ଦସ୍ତା ଆଠଣା । ଫର୍ଦ୍ଦେ ଫର୍ଦ୍ଦ କାଗଜ ନଷ୍ଟହୋଇ, ନାଲିନେଳି ପେନ୍‌ସିଲରେ ଗାର ପଡ଼ ପକ୍କା ତାଲିକା ତିଆରି ହଉଚି ! ଏଇ ପାଠ ତୁମେ ପଢ଼ୁଚ ? ଟିପା ଖଣ୍ଡିକରେ କାମ ଚଳନ୍ତା ନାହିଁ ?

କୁନ୍ତ—ଏଇ ବନ୍ଧ ତାଲିକାକୁ ମୁଁ ଜମ୍ବାର କରୁଥିଲି । ବୁଝିଲି—ଏ କଟକ ସହରରେ ଆଉ ଚଳିହବ ନାହିଁ । ବରକୋଳି ପତର ପରି ପାନ କଡ଼ାକୁ ଅଠଣା—କହ୍ନି ସେର ଅଠଣା । ଆମ୍ବଡ଼ା ପାଇଁ ବଜାରରେ ବାଡଅ ବାଡ଼ । ତା' ଉପରେ ପିଲାଙ୍କର ଏ ବନ୍ଧ ତାଲିକା । କେତେ ଟଙ୍କା ଖର୍ଚ୍ଚ କରି ବନ୍ଧ କଣୁଚୁ—କଣ ! ବର୍ଷକୁ ବର୍ଷ ପଦ୍ଧ ଏମିତି ବନ୍ଧ ବଦଳେ—

ଗୋବ—ସେଥିପାଇଁ ତମେ କାହାକୁ ଦୋଷ ଦେଇ ପାରିବ ନାହିଁ କୁନ୍ତଳା । ଏ ଯୁଗରେ ପ୍ରତି ମୁହୂର୍ତ୍ତରେ ସମୟର ଗତି ବଦଳୁଚ । ପିଲାଙ୍କର ପୁରୁଣା ବନ୍ଧ ବଦଳି ନୂଆ ବନ୍ଧ ଚଳିଲା—କ୍ଷତି କ'ଣ ?

ବିଜୁ—ହଁ ବାପା । ନୂଆ ବନ୍ଧ ପଢ଼ିବାରେ ଯୋଉ ମଜା ! ତମେ ଚଞ୍ଚଳ ଗ୍ରୁ' ଜଳଖିଆ ଖାଅ ବାପା—ବଜାରକୁ ଯିବା । କାଲି କ୍ଲାସକୁ ବନ୍ଧ ନେଇ ନ ଗଲେ ସାର୍ କହିଚନ୍ତି—ବେଞ୍ଚ୍ ଉପରେ ଠିଆ କରେଇବେ ।

ଇନ୍ଦୁ—ମୋ ବନ୍ଧ ବି ଅଜ କଣା ହବ ବାପା । ଦିଦି ତାରମ୍ବାର କହି କହୁଛନ୍ତି—କାଲି ଯେମିତି ହେଲେ ନୂଆ ବନ୍ଧ ନେଇ କ୍ଲାସକୁ ଯିବ ।

କୁନ୍ତ—ତମ ଦିଦି ଆଉ ସାର୍ ଏ ସଂସାରରେ ଘର କରି ରହୁ ନାହାନ୍ତି ପରା ? ଖାଲି ଆକାଶରେ ଉଡ଼ି ବୁଲୁଛନ୍ତି ! ଏ ଘଣ୍ଟାକୁ ତାଲିକା ଦେଲେ, ଆର ଘଣ୍ଟାକୁ ବନ୍ଧ କଣା ହେଇଯିବ !

ଗୋବ—ଆରେ ଆରେ, କୁନ୍ତଳା ! ତମେ ଏମିତି ବ୍ୟସ୍ତ ହେଇ ପଡ଼ୁଚ କାହିଁକି ? ବନ୍ଧ ଯେତେ ଚଞ୍ଚଳ କଣା ହବ—ପିଲାଙ୍କର

ସେପରି ଭଲ । ହେଲେ—ବଜ୍ରୁ, ଇତ୍ତ ! ତମ ଦୁହିଁଙ୍କ ବାହାଘର ଏଇନେ କଣ ହେଇ ପାରିବ ନାହିଁ ।

ବଜ୍ରୁ } —କାହିଁକି ବାପା—ବାହା କଣ ହବ ନାହିଁ କାହିଁକି ?
ଇତ୍ତ }

ଗୋବ—ତମେ ଦୁହେଁ କୋଉ ସ୍କୁଲରେ ପଢ଼ିବ, ଆଗେ ଠିକ୍ ହଉ ।

ବଜ୍ରୁ—କାହିଁକି ବାପା ! ମୁଁ ତ ଆମରି ସ୍କୁଲରେ ପଢ଼ିବି ।

ଇତ୍ତ—ମୁଁ ତ ଆମ ସ୍କୁଲ ଘର ଆଉ କୁଆଡ଼େ ଯିବ ନାହିଁ ବାପା ।

ଗୋବ—ଖୁସିରେ କ'ଣ ମୁଁ ତମକୁ ତମ ସ୍କୁଲରୁ ଢ଼ଠେଇ ଆଣିବାକୁ କହୁଛି ? ତମେ ଦୁହେଁ ଯାଅ—ପଢ଼ାପଢ଼ି କର—ବାଲକା କଥା ପରେ ବୁଝିବା ।

( ବଜ୍ରୁ ଓ ଇତ୍ତ ଦୁହିଁଙ୍କର ପ୍ରସ୍ଥାନ )

କୁନ୍ତ—କଣ ହେଇଛି ?

ଗୋବ—ଆମର ଅର୍ଡର ଆଜ ଆସିଗଲା ।

କୁନ୍ତ—କଣ ସେ ନୂଆ ଚୂକସ୍ତ କଥା ?

ଗୋବ—ହଁ ।

କୁନ୍ତ—ତମର ହେଇଛି ?

ଗୋବ—ହଁ, ମୁଁ ପାଇଛି ।

କୁନ୍ତ—ମା' କାଳୀ ତା'ହାଲେ 'ମୋ' ଡାକ ଶୁଣିଚନ୍ତି ।

ଗୋବ—ହଁ, ଡାକତ ଶୁଣିଚନ୍ତି । କିନ୍ତୁ—

କୁନ୍ତ—ଆଉ କିନ୍ତୁ କଣ ?

ଗୋବ—ପ୍ରମୋସନ ସଙ୍ଗେ ସଙ୍ଗେ ବଦଳିବ ହେଇଛି ।

କୁନ୍ତ—ବଦଳି ? କୋଉଠିକି ?

ଗୋବ—କୋଉଠିକ ଅବଶ୍ୟ ଜଣା ପଡ଼ୁନ । ତେବେ ବଦଳି ନିଶ୍ଚୟ ହବ ।

କୁନ୍ତ—ତାହାକୁ କୁହା ବୋଲକର ଏଠି ରହିପାଇ ପାରିବ ନାହିଁ ?

ଗୋବ—ବାଃ ! ଏଇନେ କହୁଥିଲ—କଟକ ସହରରେ ଆଉ ଚଳିପାରିବ ନାଇଁ !! କଟକରୁ ବଦଳି ହେଇଯିବା ନାଁ ଶୁଣି, ଏମିତ ପୁଣି ମୁହଁ ଶୁଖେଇ ଦଉଚ କାହିଁକି ? ତମ ପାଇଁତ ଏ ଭଗବାନଙ୍କ ଅଶୀର୍ବାଦ ବୋଲି କହିବାକୁ ହେବ ।

କୁନ୍ତ—କଥା ପଡ଼ିଲେ ସମସ୍ତେ ସେମିତ କହନ୍ତି । ଏଇ ଗୋଟାଏ ଜାଗାରେ ବାର ଚଉଦବର୍ଷ ହେଲା ଚଳି ଆସିଲିଣି । ଏ ଜାଗା ଛାଡ଼ି ଯିବାକୁ କଣ ସହଜେ ମନ ଗୁହିଁବ ?

ଗୋବ—ନଯିବାର ଉପାୟ ବ ଅଛି ।

କୁନ୍ତ—ଅଛି କି ? ସେଇଆ କର, ଏଇଠି ରହିଯାଅ । ଯେତେ ହେଲେ ନିଜଘର ଛାଡ଼ି କୋଉଠି ଯାଇ କାହା ଭଡ଼ାଘରେ ପଡ଼ି ରହିବା !

ଗୋବ—ମୁଁ ବୁଝୁଚି କୁନ୍ତଳା ! ଗୋଟାଏ ଯୁଗ ଏଠି ସଂସାର କରି ତୁମ ଗୃହିଣୀ ପଣିଆର ଚରମ ପରାକାଷ୍ଠା ତମେ ଏଠି ଦେଖେଇଚ । ଖଜୁରି ପତର ଝାଡ଼ୁଣୀ ମୁଠାଠୁଁ ଆରମ୍ଭ କରି ଏ ଖଟ, ପଲଙ୍କ, ପଙ୍ଖା, ଆଲ୍ମଅ—ସବୁଥିମ କୃତିତ୍ୱର ପରିଚୟ ଦଉଚି । ଏ ମାୟା କଣ ସହଜରେ ତମେ କାଟି ପାରିବ ?

କୁନ୍ତ—ଟମା' କଥା ଏକା ନୁହେଁ । ଏ ରାଜ୍ୟ ଯାକର ମାଇପିଙ୍କୁ ପଚାରିବ ଯାଅ—ଯିଏ ଘରଣୀ ହେଇଥିବ ନା, ଗୋଟାଏ

ଜାଗାର ମାୟାକାଟି, ଆଉ ଗୋଟାଏ ଜାଗାକୁ ଯିବାକୁ ସହଜରେ ରାଜି ହବନାହିଁ ।

ଗୋବ—ତା'ହେଲେ ତମେ ସହଜରେ ରାଜି ହଜନ ?

କୁନ୍ତ—ମନ ! ତମେ ଯାହା କହୁଚ ବଦଲି ନ ହେବାର ଉପାୟ ଅଛି ।

ଗୋବ—ଅଦ୍ଭୁତ ତୁମ ଗୃହିଣୀ ଜାତ !! ପଇସା ଦେଇ ପାନ ବଦଳରେ ବରକୋଳି ପତ୍ର ପଛେ ଖାଇବ—ହେଲେ ନିଜର ଘର କରଣାକୁ ନିଜେ ଭାଙ୍ଗିଦେଇ ପାରିବ ନାହିଁ !!

କୁନ୍ତ—କଟକ ସହରରେ ତ ସବୁଦିନେ ଏମିତି ଅସୁବିଧା ହଉ ନଥିଲା କି ସବୁଦିନେ ଏମିତି ରହିବ ନାହିଁ । ରହିଲେବି, ଏ ଘରଗୁଡ଼ ଆଉ ପାଦେ କୁଆଡ଼େ ଯିବାକୁ ମନ ବଳୁନାହିଁ । ଆମ ସେଟପଇ ଘର ଗୃହରେ ଦୁ' ବୁଦା ବାଡ଼ ପୋଇ ମାଉଚି । ବର୍ଷାପାଣି ଖାଇ ବେଶ୍ ଛନ୍ ଛନେଇ ଉଠିଲାଣି । କାଲିତ ବଡ଼ମାଛ ମିଳିଲା ନାହିଁ—ଚୂନା ମଉରାଳି ମାଛ ଗାଧୁ ଆଣିଥିଲା । ସାଧୁ କଣ କରିଚନା, ମାଛରେ ପକେଇବ ବୋଲି ଦୁ'ଖଣ୍ଡ ଡାଳ ସେଥିରୁ କାଟି ନେଇଚି । ତମେ ମିଛ ବୁଝିବ—ମୋ ଆଖି ତା' ଉପରେ ଯେମିତି ପଡ଼ିଚି—

ଗୋବ—ଆଖିରୁ ଧାର ଧାର ହେଇ ଲୁହ ଗଡ଼ି ପଡ଼ିଚି !! (ହସିଉଠି) ଏଇଆନା ?

କୁନ୍ତ—ତେମେ ହସିବ ନାହିଁ କାହିଁକି ? ଯିଏ ଘର କରଣା କରିଥାଏ ତାକୁ ଏକଥା ବାଧେ । ଗୋଟାଏ ଜାଗାରେ ପାଞ୍ଚ ଦଶବର୍ଷ ରହି କେମିତି ସବୁଲୋକେ ଆଉ ଗୋଟାଏ ଜାଗାକୁ ବଦଲି ହେଇ ଯା'ନ୍ତି କେଜାଣି ?

ଗୋବ—ଶୁଣିଚ—ଜଣେ ଭଦ୍ରଲୋକ ଗୋଟାଏ ଭଡାଘରେ ରହୁଥିଲେ । ଗୃହିଣୀ ତାଙ୍କର ତମର ଭଲ ବାଗରେ ବହୁତ ପନି ପରିବା ଗଛ ଲଗେଇ ଥା'ନ୍ତି । କଦଳୀ ଗଛରୁ ପଦ୍ୱ ଖଣ୍ଡେ କଏ କାଟି ନେଇଥିଲ ବୋଲି, ସେ ଦିନ କାନ୍ଦି କାଟି ଉପାସରେ କଟେଇ ଥିଲେ । ନିଜ ହାତରେ ପାଣି ଦିଅନ୍ତି । ନିଜେ ଘାସ ବାଛନ୍ତି । ନିଜ ପୁଅଝିଅଠୁ ଅଧିକ ସ୍ନେହରେ ଗଛ ପଦ୍ୱକୁ ପାଳିଥାନ୍ତି । ହଠାତ୍ ବାବୁଙ୍କର ବଦଳି ହୁକୁମ ହେଲା !! ହୁକୁମ ରଦ୍ଦକରିବାକୁ ଗୃହିଣୀ ବହୁଚେଷ୍ଟା କଲେ । ଫଳ କିଛି ହେଲା ନାହିଁ । ସେତେ—ବେଳକୁ କଦଳୀ ଗଛରେ ଭଣ୍ଡା, କଖାରୁ ଗଛରେ ଫୁଲ କଷି ! ଭେଣ୍ଡିଗଛ ପତର ମେଲିଲଣି । ଭଦ୍ରଲୋକ ଦରଦ ଭରା ଗଳାରେ ସ୍ତ୍ରୀଙ୍କୁ ଉଦ୍ଦେଶ୍ୟ କରି କହିଲେ—"ଏତେ କଷ୍ଟକରି ଗଛ ବଢେଇ ଥିଲ—ଫଳ ଖାଇଲା ବେଳକୁ ରହିଲ ନାହିଁ !! ଏଠି ଆସି ଯିଏ ରହିବେ, ତାଙ୍କର ଭାଗ୍ୟ ! ତମେ ପରିଶ୍ରମ କଲ—ସିଏ ଫଳ ଖାଇବେ । ଆମେତ ଦୁଇଶ ମାଇଲ ଦୂରରେ ଯାଇ ରହିବା—ଏହାର ଗନ୍ଧବି ଆମକୁ ମିଳିବ ନାହିଁ ।"

କୁନ୍ତ—ହୁଁ ! ସ୍ତ୍ରୀ ତାଙ୍କର କ'ଣ କହିଲେ ?

ଗୋବ—ମୁହଁ ଫିଟାଇ କହିବାରତ କିଛି ନଥିଲା । ଆଖିପତା ବୃଡ଼ି ଧାର ଧାର ଲୁହ ଗଡ଼ାଇ ଯାହା କହିବାର କଥା କହିଲେ ! ସତ ପାହିଲେ ଘର ଛାଡ଼ିବେ ! ସ୍ୱାମୀ ଭାବୁଥାନ୍ତି—ଆଶ୍ରମ କନ୍ୟା ଶକୁନ୍ତଳା ଦୁଷ୍ମନ୍ତଙ୍କ ଘରକୁ ଗଲାବେଳେ ମାଧବୀ ଲତାକୁ କୁଣ୍ଢେଇ କାନ୍ଦି ଲୋଟିଗଲା ପରି ସ୍ତ୍ରୀ ତାଙ୍କର କଖାରୁ ଗଛକୁ ଧରି ବହେ କାନ୍ଦିବେ !!

କିନ୍ତୁ ଏ କ'ଣ ? ସକାଳେ ଦେଖିଲି ବେଲକୁ ବଗିଚାର
ଗୋଟି ଗୋଟି ହୋଇ ସବୁଗଛ ମୂଳରୁ କଟା ହୋଇଛି—
ଆଜି ଗୃହିଣୀ ନିର୍ବିକାର ଭାବରେ ଯାଇ ଗାଡ଼ିରେ
ବସିଛନ୍ତି ।

କୁନ୍ତ—କିଏ କାଟିଲା ? କାହା ହାତଗଲା—ଫଳନ୍ତ ଗଛ ଗୁଡ଼ାକୁ
କାଟିଲା କିଏ ?

ଗୋବ—ସେକଥା ବୁଝେଇ ଦବାକୁ ପଡିବ ? ପଛର ଖଣ୍ଡେ
କଟା ହଉଥିଲେ ଯାହା ଆଖି ଲୁହରେ ଭରି ଯାଉଥିଲା—
ସାରା ବଗିଚା କଟା ହବାର ଦେଖି ତାଙ୍କ ଆଖି ଶୁଖିଲା
ରହିଲା କେମିତି ?

କୁନ୍ତ—ବୁଝିଲି । ବଗିଚା ନିଜେ ଯେତେବେଳେ ଭୋଗକରିଲା
ନାହିଁ—ଆଉ କିଏ କାହିଁକି ଭୋଗ କରିବ !! ସେଇଥି ପାଇଁ
ହନ୍ତ ସନ୍ତ ହୋଇ ଯିବା ଆଗରୁ ନିଜ ହାତରେ ନିଜେ କାଟି
ଦେଇଗଲା । ହେଲେ, ଏକଥା ମତେ କହୁଚ କାହିଁକି ?

ଗୋବ—ନାଇଁ, ଏଇନେ ତମେ କହୁଥିଲ ନା, ମୋ ଗଳାରୁ ଫୁଙ୍କାସି
ଡାଳ ଦ'ଖଣ୍ଡ କିଏ ଛିଣ୍ଡେଇନେଲା ବୋଲି ତମ ଆଖିରୁ ଲୁହ ଗଡ଼ି
ପଡ଼ିଲା ?

କୁନ୍ତ—କାହିଁକି ଲୁହ ଗଡ଼ିଲା—ତମେ ପୁରୁଷ ହୋଇ, ସେକଥା
ବୁଝି ପାରିବ ନାହିଁ ।

ଗୋବ—ତେବେ ପୁରୁଷ ହୋଇ ମୁଁ ତମକୁ ଏଇ ଉପଦେଶ
ଦଉଚି ଯେ ଯୋଉ ଡାଳ—କଖାରୁଡଙ୍କ ଯାହା କିଛି ଅଛି,
ବେଳ ଥାଉ ଥାଉ ସେ ସବୁର ସଦ୍ ବ୍ୟବହାର କରି ପକାଅ
ନଇଲେ ପୁଣି ରାତି ଅଧରେ ତୁମକୁ କୁଦି କହୁଁଚି ଧରିବାକୁ
ହେବ !

କୁନ୍ତ—କାହିଁକି ? ତମେପରା କହୁଲ ବଦଳି ବନ୍ଦ ହବାର କିଛି ବାଟ ଅଛି ।

ଗୋବ—ବାଟଅଛି । କିନ୍ତୁ ସେଥିପାଇଁ କିଛି ଦାମ୍ ଦବାକୁ ପଡ଼ିବ ।

କୁନ୍ତ—ଦାମ୍ ! କଣ ଲାଞ୍ଚ ?

ଗୋବ—ଲାଞ୍ଚ ? କେବେ ଭଲ ଏପାଖରୁ ହଉ ବା ସେ ପାଖରୁ ହଉ ମତେ ତା ପାଖ ପଶିବା ଦେଖିଚ ?

କୁନ୍ତ—ଆଉ ତା ହେଲେ କି ଦାମ୍ କଥା ତମେ କହୁଚ ?

ଗୋବ—ବଦଳି ନ ହେଲେ ନୂଆ ଗୃକସ୍ପ ପାଇବ ନାହିଁ ।

କୁନ୍ତ—କାହିଁକି ମ ?

ଗୋବ—କାହିଁକି ଆଉ କଣ ? ଗୃକସ୍ପର ସର୍ତ୍ତ ସେଇଆ ।

କୁନ୍ତ—ଇଏତ ଆଚ୍ଛା ଅଡୁଆରେ ତମେ ଆଣି ପୂରେଇଲ ।

ଗୋବ—ତା'ହେଲେ କୁହ—କୋଉଟା ତମେ ଚାହଁ ? ଗୃ କସ୍ପରେ ପ୍ରମୋଶନ୍ ନା, ଚାର ବର୍ଷର ଘର କରଣା—ପୋଇଗଛ—କଖାରୁ ଗଛ—

କୁନ୍ତ—ଏ ଗୃକସ୍ପ ହେଲେ କେତେ ଟଙ୍କା ଦରମା ବଢ଼ିବଟି ?

ଗୋବ—ହୁଁ ? କଥାଟା ତା ହେଲେ ଯାଇ ସେଠି !!

କୁନ୍ତ—କୁହନା—କେତେ ଟଙ୍କା ?

ଗୋବ—ନହାତ କମ୍ ନୁହେଁ । ହାରାହାରି ଶହେ ଟଙ୍କା ଅଧିକା ପାଇବ ।

କୁନ୍ତ—ଶହେ ଟଙ୍କା !

ଗୋବ—କିଂତୁ ଶଏଟି ଟଙ୍କା ଅଧିକା ଦେଇ ସରକାର ଓଡ଼ିଶାର ଏ ପ୍ରାନ୍ତରୁ ସେ ପ୍ରାନ୍ତ ଯାଏ—ଯେ କୌଣସି ସ୍ଥାନରେ ମତେ ନେଇ ବସେଇ ଦେଇ ପାରନ୍ତି ।

କୁନ୍ତ—(ଖୁସି ହୋଇ) ହଉ, ବେଳ ଆସିଲେ ସେ କଥା ଯାହା ହବାର ହବ । ଏଇ ପୁଝାରୀ ଜଳଖିଆ ଆଣିଲାଣି—ତମେ ଖାଅ, ମୁଁ ପାନ ଆଣେ । (ପ୍ରସ୍ଥାନ)

ଗୋବ—( ହସି ହସି ) ମୁଁ ଜାଣେ କୁନ୍ତଳା—ଏଇନେ ତୁମେ ମରୁଭୂମିରେ ବି ତମ ସଂସାର ପାତିବାକୁ ପଛେଇବ ନାହିଁ !

(ସାଧୁ ଜଳଖିଆ ଆଣି ଦେଲା । ଗୋବର୍ଦ୍ଧନ ଖାଇ ବସିଲେ)

---

## ଦ୍ୱିତୀୟ ଦୃଶ୍ୟ

[ ଗୋବର୍ଦ୍ଧନ ବାବୁଙ୍କ ଘର । କୁନ୍ତଳା ଓ ରାଧୁ କଥା ବାର୍ତ୍ତା ହେଉଥିଲେ ]

ରାଧୁ—ବାବୁଙ୍କର ବଦଳି ହେବା ତା’ ହେଲେ ଠିକ୍ ହେଲା ମା ?

କୁନ୍ତ—ହଁ, କାଲିପରି ଲେଖିକରି ଜଣେଇ ଦେଲେ ଯେ—ସେ ରାଜି ।

ରାଧୁ—କେବେ ପୁଣି ଯିବାର ହବ ମା ?

କୁନ୍ତ—ସେଇକଥା ବୁଝିବାପାଇଁତ ଆଜି ତାଙ୍କ ସେକ୍ରେଟାରୀଙ୍କ ଘରକୁ ଯାଇଚନ୍ତି । ଫେରିଲେ ଜଣା ପଡ଼ିବ ।

ରାଧୁ—ସୁକିନ୍ଦା ଜାଗାଟା କେମିତିକା ମା ? ଚଳିବାକୁ ସୁବିଧାତ ?

କୁନ୍ତ—ମୋ ମାମୁଁଘର ଗାଁ ପାଖରେ । ମୋ ପିଲାଦିନେ ମୁଁ ସେଇଠି ବଢ଼ି କୁଢ଼ି ଆସିଚି । ସାଧୁ ସୁକିନ୍ଦାରେ କୁଆଡ଼େ ଚାକିରି କରୁଥିଲା ।

ରାଧୁ—ସେଇକଥା ପରି ମା—ସୁକିନ୍ଦା ଯିବେ ବୋଲି ଭାଇନା ଘରୁ ଶୁଣି । ମୁଁ ଖାଲି ଯାହା ଅଡ଼ୁଆରେ ପଡ଼ିଚି ।

କୁନ୍ତ—କାହିଁକି ? ତୋର ପୁଣି ଅଡ଼ୁଆ କଣ ? ମୁଁ ପରା କହୁଚି, ମୋ ମାମୁଁଘର ଗାଁ—ଚଳିବାକୁ କୋଉଥିରେ କିଛି ଅସୁବିଧା ନାହିଁ ।

ରାଧୁ—ହଁ ମା ! ସୁବିଧା ଅସୁବିଧା କଥା ଖୋଜି ବସିଲେ ଏଣେ ସଂସାର ଚଳିବ କେମିତି ? ଧାଏ ନପାଏ ଏମିତି ପାଞ୍ଚବର୍ଷ ହେଇଗଲା । ଏଣିକି ବାବୁ ଯୁଆଡ଼େ, ମୁଁ ସିଆଡ଼େ ! ଏଇ ମା ବାବୁ ଆଇଲେଣି । (ଗୋବର୍ଦ୍ଧନ ଆସିଲେ)

କୁନ୍ତ—କ'ଣ ହେଲା ?

ଗୋବ—ସେକ୍ରେଟେରୀଙ୍କ ସାଙ୍ଗରେ କଥାବାର୍ତ୍ତା କରି ଆସିଲି । ଆଜ ରୁଗ୍ଣବେଳ ।

କୁନ୍ତ—ତା'ହେଲେ ଯିବା କେବେ ?

ଗୋବ—ମନ୍ଦିରେ କେତେଦିନ ଛୁଟି ମିଳିବ । ତେବେ ମୁଁ ଭାବୁଚି—ଛୁଟିଟା ଏଠି ନକଟେଇ ସେଇ ସୁନ୍ଦରଭାରେ କଟେଇବା । କଣ କହୁଚ ?

କୁନ୍ତ—ଭାରି ଭଲ ହେବ ଏକା । ଯଦି ଭାବଚ, ଦି' ଚାରିଦିନ ମାମୁଁଙ୍କ ଘରେ ଯାଇ ବୁଲି ଆସିବା ।

ଗୋବ—ତମ ମାମୁଁଙ୍କ ଘରକୁ ଯିବାକଥା ପଡ଼ନାହିଁ ସେ, ଆମରତ ସେଠି ଘର ଟିକ୍ ହେଇଗଲାଣି । ସାଧୁ ଅଜଠୁଁ ଚାଲିଯାନ୍ତି—ଆମେ କାଲି ବାହାରି ଯିବା ।

କୁନ୍ତ—କାଲି ?

ଗୋବ—ହଁ, ଆଉ ଅସୁବିଧା କଣ ?

କୁନ୍ତ—ନାଇଁ, ଯିବାର କଥା ଯେତେବେଳେ ଆଉ ଅସୁବିଧା କଣ ?

ଗୋବ—ତା ହେଲେ ଆଜଠୁ ଜିନିଷ ପତ୍ର ବନ୍ଧାବନ୍ଧି ଆରମ୍ଭ କର । ବୁଝିଲ ?

କୁନ୍ତ—ହଁ । (କୁନ୍ତଳା ଯେପରି ଅନ୍ୟମନସ୍କ ହୋଇ ପଡ଼ୁଥାନ୍ତି)

ଗୋବ—କଣ ବୁଝିଲ ?

କୁନ୍ତ—ଏଁ ! କଣ କହୁଲଟି ତମେ ?

ଗୋବ—ତମେ ଏମିତି ଅନ୍ୟ ମନସ୍କ ହେଇ ପଡ଼ୁଚ କାହିଁକି କୁନ୍ତଳା ? ମୁଁ କହୁଚି ଅଜଠୁଁ ଜିନିଷ ପତ୍ର ବନ୍ଧାବନ୍ଧି ଆରମ୍ଭ କରିଦିଅ ।

କୁନ୍ତ—(ରହି) ଜନସ୍ପନ୍ଦନଂ ରକ୍ଷାବନ୍ଧ !
ଗୋବ—ଦେଖୁଚ !! ସୁକନ୍ଦା ବଦଳ ହଉଚ ବୋଲ ଖୁସିରେ ସୀମା ନଥିଲ—ଯେମିତ ଜନସ୍ପନ୍ଦ ରକ୍ଷାବନ୍ଧ କଥା ଉଠିଲ, ମୁହଁ ଶୁଖି କଳାକାଠ ପଡ଼ିଗଲଣି ! ନଚେତ୍ କ'ଣ ବୁଝୁଚ କୁନ୍ତଳା ଯେ ଏ ଘରଟା ହାଣ୍ଡ ଶୂନ୍ୟେ ଶୂନ୍ୟେ ଟେକନେଇ ଆମେ ସୁକନ୍ଦା ଯିବା ?
କୁନ୍ତ—ନାଇଁମ । ସେ କଥା କିଏ କହୁଚ ? କି କି ଜନସ୍ପ ସାଥିରେ ନଦୀ—ସେଇଆ ମୁଁ ଭାବୁଚ ।
ଗୋବ—ଏଇନେ ନଈରେ ପାଣି । ବଡ଼ ବଡ଼ ଜନସ୍ପ କଣ୍ଟ ଯାଇ ପାରିବ ନାହିଁ । ଖବ ଦନଆ ରାସ୍ତା ଖୋଲଲେ ଟ୍ରକ ବୋଝେଇ କରି ଯାହା ନବାର କଥା, ସେତେବେଳେ ନବା । ଆମେତ ଟେ୍ରନରେ ଯିବା—ବାଡଦନ ଚଳବା ଭଳ ଯେତକ ଜନସ୍ପ ନବାର କଥା ସେତକ—ନାଁ, କଣରେ ରାଧୁ ?
ରାଧୁ—ହିଁ, ଆଜ୍ଞା । ଏଇ ଲୁଗାପଟା—ବାସନ କୁସନ—ମା'ଙ୍କ ହାତବାକ୍ସ—ଏମିତ ଦେଖି ଯାହା ନବା । ତେଣିକ ଖଟ ନଖଟକୁ ମା'ଙ୍କ ମାମୁଁଘର କଣ ଯୋଗାଯୋଗି କରିଦେବେ ନାହିଁ ?
କୁନ୍ତ—ତୁ କି କଥା କହୁଚୁରେ ରାଧୁ ? ଯେତେହେଲେ ସେ ବନ୍ଧୁ ଘର । ତାଙ୍କଠୁଁ ଗୋଟାଏ ଆଶା ଭରସା ରଖି ଏଠୁଯିବା ?
ଗୋବ—(ବିରକ୍ତ ହୋଇ) ତାଙ୍କଠୁଁ ଆଶା ଭରସା ରଖିବାକୁ କେହି ତମକୁ କହୁନ । ଯ୍ୟା' ବୋଲ ତମେ ରାଜ୍ୟ ଯାକର ଜନସ୍ପ ମୁଣ୍ଡେଇ ଠେଲ ଟେ୍ରଲ ହୋଇ ଟେ୍ରନରେ ଯିବ—ଯ୍ୟା' ହୋଇ ପାରିବ ନାହିଁ । ମହେଶକୁ ମୁଁ କହୁଚ—ତାର

କପ୍‌ରେ ଆମେ ଷ୍ଟେସନ୍ ଯିବା । ଗୋଟାଏ କପ୍‌ରେ ଆମେ ସମସ୍ତେ ବସି ବାକି ଯେତକ ଜିନଷ ଯାଇ ପାରିବ, ସେତକ ଜିନଷ ବନ୍ଧାବନ୍ଧ କର—ବୁଝିଲ । ହଁ, ସାଧୁ କାହିଁଗଲ— ସାଧୁ ?

ସାଧୁ—ସେ ଖାଉଚନ୍ତି ।

ଗୋବ—ତାକୁ କହ ଖାଇସାରି ସେ ବାହାରି ପଡ଼ୁ । ଏଇ ଦନ ଗାଡ଼ରେ ସେ ଯିବ ।

କୁନ୍ତ—ତମେ କଣ ଅଫିସ୍ ବାହାରିଲ ?

ଗୋବ—ହଁ । ମୁଁ ଅଫିସ୍ ବାହାରିଲ । ଫେରୁ ଫେରୁ କେତେ ଡେରି ହବ କହି ହଉନ । ଆମେ କାଲି ଦନଗାଡ଼ରେ ଯିବା । ଆଜ ଭିତରେ ସବୁ ଜିନଷପତ୍ର ଯେମିତ ବନ୍ଧାବନ୍ଧ ହୁଏ । ବୁଝିଲ ? ମୁଁ ଯାଉଚ । (ପ୍ରସ୍ଥାନ)

କୁନ୍ତ—ଶୁଣିଲଟି ସାଧୁ ?

ସାଧୁ—ହଁ, ମା—ଆଉ ଡେରି କାହିଁକ ? ଭଇନାକୁ ଖଦାକରି ଦେଇ ଆମେ ଆମର ବନ୍ଧାବନ୍ଧରେ ଲଗି ପଡ଼ିବା । ବାବୁ ଅଫିସରୁ ଫେରିଲାବେଳକୁ ଆଉ ଯେମିତ କିଛି ବାକି ନ ଥିବ ।

କୁନ୍ତ—ସିଏତ କଥା କହିଦେଇ ଚାଲିଗଲେ ଯେ ତାଙ୍କ ପାଟିରେ ବାଟୁଲି ବାଜିଲ ନାହିଁ । ତୁ ବି କଣ ତାଙ୍କରି କଥାରେ ଭସି ଗଲୁଣି ଦେଖୁଚ ।

ସାଧୁ—କାହିଁକ ମା—ନିତ ଦନଆ ଚଳ ପ୍ରଚଳକୁ ଯେତକ ଜିନଷ ଲୋଡ଼ା ସେତକ ବନ୍ଧାବନ୍ଧ କରିବା ।

କୁନ୍ତ—ତୁନି ହ' । ତୁ ବି ତାଙ୍କରି ଭଳି ଉପରେ ଭସି କଥା କହି ଶିଖିଲୁଣି । ତଳ ଉପରେ ହେଇ ସାତଟା ଘରେ

କାନପଏସ ଖୁନ୍ଦହେଇ ରହୁଚ । ଖଟ—ଚୌକି—ବେଞ୍ଚ— ଆଲମିରା ସିନା ଯିବ ନାହିଁ—ଆଉସବୁ କାନାସ୍ତ ?

ରଧୁ—ବାବୁ ଫର କହୁଲେ ଖର ଦିନଅ ରାସ୍ତା ଖୋଲିଲେ—

କୁନ୍ତ—ଛୋ' ବାବୁଙ୍କର ଯୋଉ ବୁଦ୍ଧି—ତୋର ବି ସେଇ ବୁଦ୍ଧି ! ଖରଦିନଅ ରାସ୍ତା ଖୋଲିବାକୁ ଆଉ ଛ'ମାସ ବାକି । ଏ ଛ' ମାସ କ'ଣ ଅଇଠ ଖପରା ବଇଠ ବାଆ ହେଇ ମୁଁ ବସିଥିବି ! ସେକଥା ହେଇ ପାରିବ ନାହିଁ । ମୋର ଯାହା ଯାହା ଦରକାର ମୁଁ ସବୁନେବି । (ଏତିକିବେଳେ ବାହାରୁ ସଦାଶିବଙ୍କ ପାଟି ଶୁଭିଲା)

ସଦାଶିବ—(ବାହାରୁ) ଗୋବର୍ଦ୍ଧନବାବୁ ଘରେ ଅଛ-ଗୋବର୍ଦ୍ଧନବାବୁ ? ଆରେ ହେ ରିକ୍‌ସାବାଲା । ସେ ବିଛଣା ସୁଟକେଶ୍ ଏଇଟିକି ଆଣ । (କୁନ୍ତଳାଙ୍କ ଭାଇ ସଦାଶିବ ଆସିଲେ)

କୁନ୍ତ—ଭାଇ ! ଆମ ଚିଠି ପାଇଥିଲ ?

ସଦା—ହଁ । ଚିଠି ପାଇତ ସାଙ୍ଗେ ସାଙ୍ଗେ ବାହାରି ପଡ଼ିଲି ।

ରଧୁ—ଦଣ୍ଡବତ ବାବୁ ।

ସଦା—କିରେ ରଧୁ, ସବୁ ଭଲତ ?

ରଧୁ—ହଁ ଆଜ୍ଞା, ଆପଣଙ୍କ ଦୟା । ଆମେ ତ ସବୁ ଏଠୁ ଯାଉଚୁ ।

ସଦା—ସେଇ ସିବାକଥା ଶୁଣିକି ମୁଁ ଆସିଲି । ବାଟରେ ରମ ମହେଶ ବାବୁଙ୍କ ସାଥିରେ ଦେଖା ହେଲା । ତାଙ୍କଠୁଁ ସବୁ ଶୁଣିଲି । ସୁନ୍ଦରଦାତ ଭାରି ଭଲ ଜାଗା—ଆମ ମାମୁଁ ଘର ପାଖ—ସବୁ ସୁବିଧା । ଆଉ କଣ ? ହଁ କାଲି ଦିନ ଗାଡ଼ିରେ ଯାଉଚ ?

କୁନ୍ତ—ହଁ ।

ସଦା—କାହିଁ ଯିବାର ଅଗା ଗୋଡ଼ା ତ କିଛି ମାଲୁମ ପଡ଼ୁନାହିଁ ।
କାଲି ଦିନ ଗାଡ଼ିରେ ଯିବ—ଏ ଯାଏ ଜିନିଷପତ୍ର ବନ୍ଧା
ବନ୍ଧି ର ନାଁ ବି ଧରିନ । ଗୋବର୍ଦ୍ଧନ ଅଫିସ ଯାଇଚି ?

କୁନ୍ତ—ହଁ । ତାଙ୍କ ବୁଦ୍ଧି ଶୁଣୁଚ ଭାଇ—କହୁଚନ୍ତି, ହାଙ୍ଗରେ
ବିଛଣା ସୁଟକେଶ ଛଡ଼ା ଆଉ କିଛି ନେବେ ନାହିଁ ।

ସଦା—କାହିଁକି ?

କୁନ୍ତ—ଗାଡ଼ିରେ ଭିଡ଼ ହଉଚି—ବେଶି ଗୁଡ଼ାଏ ଜିନିଷ ପତ୍ର
ନେଇ ଯାଇ ହବନାହିଁ ।

ସଦା—ଓହୋ ! ଗାଡ଼ି ଭିଡ଼ଟା ସମସ୍ତଙ୍କ ପାଇଁ ନା ଏକା ଯାଁଙ୍କର
ପାଇଁ ହୋଇଚି ! ଗୋଟାଏ ଅଫିସର ହୋଇ ସେଠିକି
ଯାଉଚନ୍ତି—ଏମିତି ଠୁଙ୍ଗା ଠୁଙ୍ଗା ଯାଇ ପହଞ୍ଚିଲେ ଲୋକେ
କଣ କହିବେ ? ନା କଣରେ ସାଧୁ ?

ସାଧୁ—ଆପଣଙ୍କ କଥା ଠିକ୍ ଯେ—ହେଲେ ଗାଡ଼ିରେ ଅସୁବିଧା
ହବ ବୋଲି—

ସଦା—କି ଅସୁବିଧାଟାଏ ହବ ? ତୁ ସବୁ ନିଜେ ସେଥର
ଦେଖିଚୁ—ରଥ ଯାତ୍ରା ଭଳି ଭିଡ଼ ଟାଇମରେ ମୁଁ ଗାଡ଼ିରେ
ଗାଡ଼ିଏ ଜିନିଷ ଟ୍ରେନରେ ଉଠେଇ ଦେଲି !

ସାଧୁ—ହଁ ଆଜ୍ଞା । ଜିନିଷ ସିନା ଉଠେଇ ଦେଲେ—ଆପଣତ
ନିଜେ ଉଠି ନ ପାରି ରହିଗଲେ !

ସଦା—ଓହୋ—ଉଠି ପାରିଲି ନାହିଁ—ସେ ଅଲଗା କଥା ।
ଆଉ ଟିକିଏ ଅଣ୍ଟା ଭିଡ଼ି ଥିଲେତ ଉଠି ପାରି ଥାନ୍ତି !
ନାହିଁ ନାହିଁ ସେ କଥା ନୁହେଁ—ତୁ ଗୁଲିଲୁ, କଣ କଣ
ଯିବାର କଥା ମୁଁ ଆଗେ ଦେଖେ ।

କୁନ୍ତ—ତମେ ଆମ ସାଙ୍ଗରେ ସୁକନ୍ଦା ଯାଏ ଯିବଟି ଭାଇ ?

ସଦା—ମୁଁ ! ମୋରତ କାଲ ଭୁବନେଶ୍ବର ଯିବା କଥା । ମୁଁ ଆଜ ତମ ସାଥିରେ ଯାଇ ପାରୁଚ କୋଉଠି ? ହେଲେ ମୁଁ ତମକୁ ଗାଡ଼ରେ ଚଢ଼େଇ ଦେଇ ଆସିବ । ବୁଝିଲ ?

ରଘୁ—ଆପଣ ଅଗେ ଗୋଡ଼ହାତ ଧୋଇବେଟି ବାବୁ-ପାଣି ଦେଲଣି ।

କୁନ୍ତ—ହଁ ଭାଇ, ତମେ ଗୋଡ଼ହାତ ଧୁଅ । ରଘୁ, ଭାଇଙ୍କ ପାଇଁ...

ସଦା—ନା, ନା ମୁଁ ଏଇନେ କିଛୁ ଖାଇବ ନାହିଁ । ତୁ ଚାଲିଲୁ ଅଗେ, ଜନସ ପତ୍ର ବନ୍ଧାବନ୍ଧର ଆୟୋଜନ କରିବା ।



# ତୃତୀୟ ଦୃଶ୍ୟ

[ଗୋବର୍ଦ୍ଧନଙ୍କ ଘର । ଅନେକ ସ୍ଥଳେ ଜିନିଷ ପତ୍ର
ବନ୍ଧାବନ୍ଧ ହେଇ ଥୁଆ ହୋଇଛି ।]

ଗୋବ—(ବିରକ୍ତ ହୋଇ) ଆସ୍ମ ସଦାଶିବ ଭାଇ ! ତମ ଆଖି ଆଗରେ ଏ ସବୁ ହେଉଛି ?

ସଦା—ମୋ ଆଖି ଆଗରେ କଣ ହେବ ! ମୁଁ ତ ଆସିଲାରୁ ଜିନିଷ-ପତ୍ର ବନ୍ଧାବନ୍ଧ ହେଲା । ନଇଲେତ ଏତେ ବେଳକୁ କିଛି ହେଇ ନ ଥାନ୍ତା ।

ଗୋବ—କିନ୍ତୁ ଯାହା ହେଉଛି—ସିଏତ କିଛି ନହେବା ସଙ୍ଗେ ସମାନ । ଏତେ ପରିଶ୍ରମ ସବୁ ପଣ୍ଡ ହେଲା ।

କୁନ୍ତ—କାହିଁକି ?

ଗୋବ—କାହିଁକି ? ଏଇ ତମ ନିତ ଦିନିଆ ଜିନିଷ ? ଏଇ କେଇଟା ଟ୍ରଙ୍କ ? ଏକ, ଦୁଇ, ତିନି, ଚାରି, ପାଞ୍ଚ—

କୁନ୍ତ—କିଛି ନବୁଝି ତମେ ସେମିତି ହୁଅ ନାହିଁ କହି ଦଉଛି ।

ଗୋବ—ଆଖି ଆଗରେ ତ ଦେଖୁଚି—ଆଉ ବୁଝିବି କଣ ?

କୁନ୍ତ—ଏଇ ଟ୍ରଙ୍କ କେଇଟା ନବାକୁ ହବ ।

ଗୋବ—ଆଉ ଏଇଟେ—ଏଇ ଛ'ଫୁଟି ଲମ୍ବ ଚାରି ଫୁଟି ଓସାରର ଏଇ କିରାସିନ ପଠାର ବାକ୍ସଟା—ଏଥିରେ କ'ଣ ଅଛି ?

କୁନ୍ତ—ଯେତେ ସବୁ ଛୋଟିକା ଜିନିଷ ଏଇଥିରେ ପଶିଛି ।

ଗୋବ—କଣ ସବୁ ଛୁଟିକା ଜିନିଷ ରଖିଚ ଦେଖେଁ । ଏ କଣ ?
ଲମ୍ବା ପାଡ଼ ଉପରେ କଣ୍ଟା ପିଟା ହୋଇ ବାକ୍ସଟାଏ ତିଆରି କରା ହୋଇଚ—ବାଟନାହିଁ । ହଇରେ ସାଧୁ, ଇଏ କଣ ହୋଇଚ ?

ସାଧୁ—ଆଜ୍ଞା ବାବୁତ କହିଲେ—ସାଗର ମଲ୍ଲ ଦୋକାନରୁ ମୁଁ ଯାଇ ଏ ଚାଦରଟା ଅଣିଲି । ଏଇଟାତ ଲୁଗା ଚାଦର— ଏଥିରେ ମୁହଁ ଫୁଅ କଣ କରୁଛୁ ଅଛୁ ? ଭିତରେ ଜିନିଷ ପଶି ଉପରେ ଫଟା ଦିଆ ହୋଇ ଲମ୍ବା ପାଳ ଉପରେ କଣ୍ଟା ପିଟା ହେଲା ।

ଗୋବ—କେଡ଼େ ଫେନ ହୋଇଚ ଏଇଟା ! (ପରୀକ୍ଷା କରି) ବାବା ! ଇଏତ କଣ ମୋଟେ ବୁଝିହେଉ ନାହିଁ ! ଆଉ— କାହା ବୁଦ୍ଧିରେ ଏ କାମ ହୋଇଚ ? ଏ ଛଅଫୁଟରେ ଗୁଡ଼ିଫୁଟ ବାକ୍ସ—ଦୁ'ମହଣ କି ତିନି ମହଣ ଓଜନ—ଇଏ ଏଠୁ ଷ୍ଟେସନ ଯାଏ ଯିବ କେମିତି ? ଜାହାଜରେ ଜାଗା ଧରିବ ?

ସଦା—ଓହୋ—ତମେ ଏମିତି ବ୍ୟସ୍ତ ହୋଇ ପଡୁଚ କାହିଁକି ଗୋବର୍ଦ୍ଧନ ! ଏ ଚାଦରରେ ଦରକାରୀ ଜିନିଷ ଛଡ଼ା ବେଦରକାରୀ ଜିନିଷ ଗୋଟେ ବି ନାହିଁ ।

ଗୋବ—ସେ କଥା ମୁଁ ଏ ଚାଦରର ଆକାର ଦେଖି ବୁଝି ପାରୁଚ । ତିନିଟା ଜେଳଖାତ ଦୋକାନର ଜିନିଷ ଏଥିରେ ଜାଗା ଧରିବ ! ହେଲେ ଏଠୁ ଏ ଯିବ କେମିତି ?

ସଦା—ଯିବ ।

ଗୋବ—କେମିତି ଯିବ ନା-ଯିବ ! ଏଇଟା ଜାହାଜରେ ରହିଲେ ଆମେସବୁ ବସିବୁ କେମିତି ?

ସଦା—ଅହେ ବାବୁ, ତପର ସେ ମହେଶବାବୁ ଏଠିକି ଆସିଥିଲେ । ମୁଁ ତାଙ୍କୁ କହୁଚି—ଜପ୍ ପଛରେ ସେ ଯୋଉଟା ଲାଗିଥାଏ-କଣ ତାକୁ କହନ୍ତି ?

ଗୋବ—ଟ୍ରେଲର ।

ସଦା—ହଁ ଟ୍ରେଲର । ଜପ୍ ସାଙ୍ଗରେ ଟ୍ରେଲରଟା ଦବାକୁ ସେ ରାଜି ହେଇଚନ୍ତି । ଆଉ ଅସୁବିଧା କଣ ?

ଗୋବ—ତା'ହେଲେ ସଦାଶିବ ଭାଇ—ଚାବିଲଠୁ ଟ୍ରେଲର ଯାଏ ସବୁ ତମରି କାରସାଦି ?

ସଦା—ହଁ ଗ । ତା ନହେଲେ ସୁବିଧାରେ କାର୍ଯ୍ୟ ସମ୍ପନ୍ନ ହିବ କେମିତି !

ଗୋବ—ରାଧୁ, ଖୋଲ ! ଏ ଚାବିଲ ତୁ ଖୋଲ୍-ମୁଁ ଦେଖେ ଏଥିରେ କଣ ଅଛି !

ରାଧୁ—ଖୋଲୁଚି ଆଜ୍ଞା ।

ସଦା—କ'ଣ ଖୋଲୁଚି ଆଜ୍ଞା !! ହଇରେ ରାଧୁ—ଆମେ ତନିଜଣ-ଯାକ ଆଜି ଦିନ ସାରା ପରିଶ୍ରମ କରି ଏଇଟାକୁ ଠିକ୍ କରିଛୁ—ସେ କିଛି ନ ବୁଝି ନ ସୁଝି କହିଦେଲେ ବୋଲି ତୁ ହାତ ହତିଆର ଧରି ଖୋଲିବାକୁ ହାଜର ହେଇଗଲୁଣି !

ରାଧୁ—ତା' ହେଲେ କ'ଣ ଆଜ୍ଞା ଖୋଲିବି ନାହିଁ ?

ଗୋବ—କହୁଚି ହଇ—ଖୋଲ୍ ।

କୁନ୍ତ—ଦେଖୁଚତ ଭାଇ—ତାଙ୍କ ଜିଦ୍‌କୁ ଦେଖୁଚ ?

ସଦା—କାହିଁକି ହେ ଗୋବର୍ଦ୍ଧନ ! ଏଇଟାକୁ କଣ ତମେ ନିଜେ ମୁଣ୍ଡେଇ ସୁକିନ୍ଦା ଯିବକି ? ତବା ଭିତରେ ଯାଇ ନପାରିବ ତ ଟ୍ରେଲ୍‌ରରେ ଯିବ ।

ଗୋବ—ମୁଁ ସବୁ ବୁଝିଛି ସଦାଶିବ ଭାଇ । ମୋର ଅଜା ଅଫିସରୁ କାମ ଶେଷ ହୋଇ ପାରିନ ନାହିଁ—କାଲ ମନେ ହୁଏତ ଅଫିସରୁ ସିଧା ଷ୍ଟେସନ୍ ଯିବାକୁ ପଡ଼ିବ । ସେ ଭରତର ବେଳେ ଏମାନଙ୍କୁ ନେଇତ ଗାଡ଼ିରେ ଉଠିବା ମୁସ୍କିଲ—ଅଭ ବ୍ରେକ୍ କଥା ପଚୃରେ କଏ ?

ସଦା—ମୁଁ ତ କହୁଚି—ସେ ଦାୟିତ୍ୱ ମୋର ।

ଗୋବ—କିନ୍ତୁ ଖଇଁଟାତ ମୋର । ଅଯଥା ବ୍ରେକ୍‌ରେ କାନଷ ବୁକ୍‌କାର ଅଧିକା ମାସୁଲତ ଗଣିବ ! ତାଛଡ଼ା ଯାଯପୁର ରୋଡ଼କୁ ମାଲ ବୁକ୍ କଲେ ସିଏଯେ ଝାରସୁଗୁଡ଼ାରେ ଯାଇ ନପହଞ୍ଚିବ—ଏ ଗ୍ୟାରେଣ୍ଟି ଦବ କଏ ?

ସଧୁ—କାହିଁକି ଅଜ୍ଞା—ଏତେ ପାନି ଭୁଣ୍ଡରୁ କଣ ମିଳିବ ? ଡାବଲଟାତ ଖୋଲ ଦେଲେ ପାଠ ସରିଲା । ଖୋଲିବି ଅଜ୍ଞା ?

ଗୋବ—ହଁ, ଖୋଲ । ଏ ଛ ଫୁଟରେ ଗୃହଫୁଟ ଡାବଲଟା ଦେଖିଲେ ମଣିଷ ମନ ଖରାପ ହୋଇ ଯାଉଛି । ଖୋଲ୍ ।

କୁନ୍ତ—ହଉ, ତମ ଇଚ୍ଛା, ଯାହା କରୁଚ କର—ମୁଁ ଏଠି ଚୁପ ହୋଇ ବସିଲି ।

( କୁନ୍ତଳା ଗୋଟାଏ ଚୌକିରେ ବସିଲେ । ସଧୁ ବାକ୍ସ ଖୋଲିବାକୁ ଲାଗିଲା । ବଜୁ ଗୋଟାଏ ବାକ୍ସ ଘୋଷାରି ଘୋଷାରି ଆଣି ଆସିଲା )

ବଜୁ—ଅପା ! କୁଆଡ଼େ ଗଲୁ ଅପା ! ବାଃ ରେ ? ମୋ ଉପରେ ସବୁ ପକେଇ ଦେଇ ସେ କୁଆଡ଼େ ପଳେଇଲାଣି । ସଧୁ, ଅଇଲୁ ଏଣେ ।

ଗୋବ—ତୋର ପୁଣି କଣ ହେଲା ? ଗଧୁ କଣ କରବ ?
ହଇରେ, ଏସବୁ କଣ !

ବଜୁ—ଇଏ ! ଇଏତସ୍ ବାପା—ଓଃ ! ଅପାଠା କୁଆଡ଼େ ଗଲା ?
ଅପା—ଅପା—

ଗୋବ—କଟରେ, ମୁଁ ହସ୍ ପତୃତୁଚ ଇଏକଣ ? ତୁ ଅପା ଅପା
କଣ ହଉଚୁ ? କଣ ଏଥିରେ ଅଛି ?

ବଜୁ—ଫଟୋ ଆଉ କେଲେଣ୍ଡର । ଏଇ ଭାଲକା ଦେଖ । ମୋଟ୍‌ରେ
ତେସ୍ତାଳିଶିଟା ଫଟୋ, ଆଉ ଏକୋଇଶିଟା କେଲେଣ୍ଡର
ଏଥିରେ ଅଛି ।

ଗୋବ—କଣ ହେଲା ? ତେସ୍ତାଳିଶିଟା ଫଟୋ !! ( ଦେଖିବାକୁ
ଲାଗିଲେ )

ବଜୁ—ଥାଉ ବାପା, ଥାଉ । ସେଥିରେ ସେମିତ ଲଗନାହିଁ । କାଚ
ଭାଙ୍ଗିଯିବ ।

ଗୋବ--ଏ ଫଟୋ ସବୁ କାନ୍ଥରୁ ଉତାରିବାକୁ ତୋତେ କିଏ
କହିଲା ? ତା ସାଙ୍ଗରେ ପୁଣି ଏକୋଇଶିଟା କାଲେଣ୍ଡର !

ବଜୁ--କାହିଁକ ବାପା--ଏତେ ଜିନାଷ ଯାଉଚ--ଆମ ଫଟୋ ଆଉ
କେଲେଣ୍ଡର ଯିବ ନାହିଁ ?

ଗୋବ--ଏ କାଚ ବନ୍ଧା ଫଟୋଗୁଡ଼ାକ ଯିବ କେମିତ--ଭାଙ୍ଗି
ଚୁରମାର ହୋଇଯିବନାହିଁ ?

ବଜୁ--ମାମୁଁଙ କହିଲେ ସୁବିଧାରେ ନେଇଯିବେ ।

ଗୋବ--ସବୁଯାକ ନେଇ ସେ ଟାଙ୍କ ଉପରେ ରଖ । ଖଣ୍ଡେଣ୍ଡ
ଏଇନେ ଯିବନି ।

ଗଧୁ--ତବଲ ଖୋଲିଲଣି ଅଜ୍ଞା ।

ଗୋବ—ଆସ କୁନ୍ତଳା, ସେଠି ବସିଲ କାହିଁକ ? କଣ ସବୁ
ଏଥିରେ ରଖିଚ ଦେଖିବା ଆସ ।

କୁନ୍ତ—ମୁଁତ ରଖିଚ, ମୁଁ ଆଉ ଦେଖିବ କଣ ? ତେବେ ତମର
ଦେଖ । ସତେ ଯେମିତ ସେଥିରେ ମାଟି ଗୋଡ଼ି ଗୁଣ୍ଡ଼ଏ
ଭର୍ତ୍ତିକରିଚ !! ସେମିତିଆ କଥା କହୁଚନ୍ତି !

ସଦା—ଓହୋ ! ତୁ ରହ । ଅବକାଶ୍ୱ ଦାରୋଗା ଭଲତ ସେ
ତଦାରଖ କରି ଦେଖୁଚନ୍ତି—ଦେଖନ୍ତୁ କ ଦରକାରୀ
ଜିନିଷ ଏଥିରେ ଅଛି । ଇଏତ ହେଇ—ଷ୍ଟୋଭ, ଲଣ୍ଠନ,
ଲମ୍ପ୍, କେଟ୍ଲି, କପ୍ ତ୍ସମଚ, ବୋତଲ—

ଗୋବ—ବୋତଲ ! କେଇଟା ବୋତଲ ଏଥିରେ ରଖିଚ
କୁନ୍ତଳା ?

କୁନ୍ତ—ମୁଁ ଜାଣିନାଇଁ ।

ଗୋବ— ତା' ହେଲେ ଗଣାହବ ?

କୁନ୍ତ—କଣ ଏମିତ ଠମକଉଚମ ? ଗଣୁ ନ ।

ଗଦ୍ଧୁ— ଆଜ୍ଞା ସତରଗଣ୍ଡା ଦଟା ଅଛି ।

ଗୋବ—ଅଚ୍ଛା ସଦାଶିବ ଭାଇ, ଏ ଘଟଣାରେ ମଣିଷ ପାଗଳ
ନହୋଇ ରହିପାରେ ? ଯାଜପୁର ରୋଡ଼ରୁ ଓହ୍ଲେଇ
ବସ୍ ରେ ଯିବାକୁ ହବ । ସେଠୁ ପୁଣି କେତେ ମାଇଲ ବାଟ
ଚାଲିବାକୁ ପଡ଼ିବ । ଏ ଅବସ୍ଥାରେ ଯାଙ୍କର ସତର ଗଣ୍ଡା
ଦଟା ବୋତଲ—ଆଉ ତାର ଡେସ୍ପାଳଶିଟା ଫଟୋ !

ସଦା—ତମେ କାହିଁକି ବ୍ୟସ୍ତ ହଉଚ ହେ ଗୋବର୍ଦ୍ଧନ ? କିଛି
ଅସୁବିଧା ହବନାଇଁ ।

ଗୋବ—ହଉ ହଉ ମୁଁ ଦେଖେ—ଆଉକଣ ସବୁଅଛି ।...ଡେକଚି,
କୋରଣା, କଟୁରି, ଛୁରି, ଦା, ଶାବଳ ( ହସିଉଠି ) ଘର

ପଥୁରିଆ ଜାଗା ଏଇ ଯୁଦ୍ଧଟା ! ଡମ୍ବର ଏ ଦା, ଖାବଲ କତ୍ତୁ କାମକୁ ଆସିବ ନାହିଁ କୁନ୍ତ ।

କୁନ୍ତ—ମୋ ହାଡ଼ ଜଳାନାହିଁ କହୁ ଦଉଚ ।

ଗୋବ—ଆରେ ଇଏ କଣ ? ଇଏ ଚବ୍ରି ଲୁଗା ପୁଳାଏ ଯାଉଚ କାହିଁକ ?

ସଦା—ଚିରି ଲୁଗା ! ଓହୋ—ଦେଉଳ ଗୁମ୍ବଜ କାଳେ ଭାଙ୍ଗିଯିବ ନା—ସେଇଥି ପାଇଁ ଚିରି ଲୁଗା ପୁଳାକ ଯାଉଚ ।

ଗୋବ—ବୋଉଲ କୋଉଠି—ଲୁଗା କୋଉଠି ! ଏକଥା କହିଲେ ମୁଁ ମାନିବ ?

କୁନ୍ତ—ତାଙ୍କୁ ପଗୃରବକି ଭାଇ—ସେ କଣ ବଳନ୍ତରୁ ଆଇଲେକ ? ଯାଙ୍କ ଘରେ ଦାନକୁ ପନ୍ଦରଗଣ୍ଡା ଦହି ସଂଜବତୀ ବଳାହବା ସୁକଦାରେ ପହଞ୍ଚି ସଜକନା ଖଣ୍ଡେ ମାଇଁ ମୁଁ ଯାଇ କାହା ଦୁଆରେ ହାତ ପାତ ଠିଆ ହେବ !

ଗୋବ—ହେଲା । ମାନିଲ । ସଜକନା ରହିଲା । ଆଉ ସେଇଟା କଣ ? କସଠି କଳା ହୋଇ ଦଶୁଚ ?

ସଦା—କାହିଁ ? କୋଉଠା ? ଓ ସେ କଣରେ ? ସେଇଟା—ଦୁଧ ହାଣ୍ଡି ।

ଗୋବ—ହାଣ୍ଡି !! ଡମ୍ବ ଏଠୁ ହାଣ୍ଡିମାଠିଆ ବି ନେଇକର ଯିବ କୁନ୍ତଳା ?

କୁନ୍ତଳା—ଆଜିକି ଦଶବରଷ ହେଲା ସେ ହାଣ୍ଡିରେ ମୁଁ ଦୁଧ ଆଉଟୁଚ । ଯାତକର ସବୁ ପଡ଼ିଗଲାଣି । ତାକୁ ମୁଁ ଯେମିତ ହେଲେ ନେବ ।

ଗୋବ—ଡମ୍ବର ଏ ଜାଦୁକୁ ଏ ହାଣ୍ଡି ମୁଁ ଏଇଠି ଭାଙ୍ଗି ଛତ୍ର କରିଦେବ—ବୁଝିଲ ।··ହେ ଭଗବାନ ! ଏ ଭଙ୍ଗା ଗୃହସ୍ଥଟା ପୁଣି ନବାକୁ ଭୁଲିନ ?

ବିଜୁ—ଅପା, ଦେଖିବୁ ଆଲେ ଅପା, ଏଇଟା ସେଇ ଗୃମଚ !

ଗୋବ—କୋଉ ଗୃମଚ ?

ବିଜୁ—ଏଇଟା ସେ ବଡ଼ ଗୃମଚ ବାପା—ହାତେ ଲମ୍ବର ବେଣ୍ଟ ଏଥିରେ ଥିଲ । ଆମର ବ୍ୟାଟ୍ ନଥିଲବୋଲି ଏଇଟାକୁ ମୁଁ କ୍ରିକେଟ୍ ବ୍ୟାଟ କରି ଖେଳୁଥିଲି । ଚଲ୍ଟା ହଜିଗଲ ବୋଲି ଅପା ଗୋଟାଏ କଞ୍ଚା ଅମୃତ ଭଣ୍ଡା ଧରି ବୋଲ୍ କଲ—ମୁଁ ଏ ଗୃମଚରେ ବ୍ୟାଟ୍ କଲି । ଗୋଟାଏ ହିଟ୍ରେ ଏ ଗୃମଚ ଭଙ୍ଗି ଦାଝଣ୍ଡ ।

କୁନ୍ତ—ତାଙ୍କରତ କିଛୁ ମନେ ରହିବ ନାହିଁ ! ଏ ଗୃମଚ ଭାଙ୍ଗିଲ ବୋଲି ପରି ସେଦିନ ତମେ ବିଜୁ ଭଉଙ୍କୁ ଘଣ୍ଟାଏ କାଳ କେତେ କରିଥିଲି ?

ଗୋବ—ବୁଝିଲି । ବିଜୁ, ଇଡ ଗୃମଚ ଭଙ୍ଗିଲେ । ତେଲେ ଏ ଭଙ୍ଗା ଗୃମଚଟା ଏଥିରେ ରଖିଚ କାହିଁକି ?

କୁନ୍ତ—ସେ ଗୃମଚ ଯିବ ।

ଗୋବ—ଯିବ ? ସିଧା, ଏ ଗୃମଚଟା ନେଇ ଫୋପାଡ଼ି ଦେଇ ଆ'ଉ ।

ସଦା—ବାସ୍ତବିକ୍ କୁନ୍ତଲା, ଏ ଭଙ୍ଗା ଗୃମଚଟା ବା ତୁ ନଉଛୁ କାହିଁକି ?

କୁନ୍ତ—ତମେ ଏଣେ ଆସିବଟି ଭାଇ । ଆସ । (ଦୁହେଁ ଅନ୍ତରାଳକୁ ଗଲେ)

ଗୋବ—ସେଠି କଣ କରୁଚ ସଦାଶିବ ଭାଇ, ଏଣିକି ଆସ ।

ସଦା—(ଅନ୍ତରାଳରୁ) ଚାଲି ଯାଉଚ । କଣ କହୁନ ?

ଗୋବ—ମୁଁ ଯାହା ଦେଖୁଚ, ମାତ୍ର ଗୋଟିଏ ଝୁଡ଼ିରେ ଆମର ସବୁ ଦରକାରୀ ଛିଟିକା ଜିନିଷ ଢକ ଯାଇ ପାରିବ । (ସଦାଶିବ ଆସିଲେ)

ସଦା—ଭଲକଥା । ଝୁଡ଼ିଟାରେ ଯଦି କାମ ଚଳିବ, ତେବେ ଟାବଲଟା ଦରକାର କଣ ? (ରାଗିଯାଇ) ଆଣରେ ସାଧୁ— ଝୁଡ଼ି ଗୋଟାଏ ଆଣ ।

---

# ଚତୁର୍ଥ ଦୃଶ୍ୟ

[ ପାସେଞ୍ଜର ଟ୍ରେନର ଗୋଟିଏ ଡବା । କୁନ୍ତଳା, ବଳୁ, ଇନ୍ଦ୍ର
ଓ ଗୋବର୍ଦ୍ଧନ ବାବୁ ପ୍ରଭୃତି ବସିଛନ୍ତି । ସଦାଶିବ
ମଧ୍ୟ ଅଛନ୍ତି । ସଦାଶିବ ଓ କୁନ୍ତଳା ଖୁବ୍ ଉଦ୍‌ବିଗ୍ନ
ଥିଲପରି ଜଣା ଯାଉଥାନ୍ତି । ଗାଡ଼ି ଛାଡ଼ିବାକୁ
ଆରମ୍ଭ କଲାଣି । କୁନ୍ତଳା ଓ ସଦାଶିବ
ନିମ୍ନସ୍ୱରରେ କଥା ହେଉଥାନ୍ତି ]

କୁନ୍ତ—ଏଇ ଭାଇ, ଗାଡ଼ି ଛାଡ଼ିଲା । ସିଏ ଆସିଥିଲେଟି ?

ସଦା—ହଁ ପରା, ଆସିଥିଲେ । ହେଲେ କୋଉଠି ରହିଲେ—

ଗୋବ—ଗାଡ଼ି ଛାଡ଼ିଲା ସଦାଶିବ ଭାଇ ।

ସଦା—ଏଁ ! ହଁ । ( ଓହ୍ଲାଇ ପଡ଼ିଲେ )

କୁନ୍ତ—ଭାଇ !

ସଦା—ତୁ ବସ । ( ଚାଲିଗଲେ )

ଗୋବ—ଏ କଣ ? ସଦାଶିବ ଭାଇ ହଠାତ୍ ଓହ୍ଲାଇ ପଡି ଏମିତି
ତରବର ହୋଇ ଚାଲିଗଲେ କାହିଁକି ? କ'ଣ ହୋଇଛି ?

କୁନ୍ତ—ନାଇଁ, ହବ ଆଉ କ'ଣ ?...କୁଆଡ଼େ ଗଲେ ସେ ?
(କୁନ୍ତଳା ବ୍ୟସ୍ତ ହୋଇ ପଡୁଥାନ୍ତି)

ଗୋବ—କଥା କଣ କୁନ୍ତଳା ? ତମର ଭାଇଙ୍କଠି କଣ ଆଉ କାମ
ଥିଲା ? ( ବାହାରକୁ ଚାହିଁ ) ଆରେ ! ଏ କଣ ! ସଦାଶିବ
ଭାଇ ଏମିତି ଅଣନିଃଶ୍ୱାସ ହୋଇ ଗାଡ଼ି ସଙ୍ଗେ ସଙ୍ଗେ
ଦଉଡ଼ୁଛନ୍ତି କାହିଁକି ? ପଡ଼ିଯିବେ ଯେ—